# ବୃତ୍ତି

ଦୀପକ ମିଶ୍ର

BB ବୁକ୍ସ୍ ଏଣ୍ଡ ବୁକ୍ସ୍
ବିନୋଦବିହାରୀ, କଟକ - ୨

ବୃତ୍ତ (କବିତା ସଂକଳନ)

ରଚନା ଅଧ୍ୟାପକ ଦୀପକ ମିଶ୍ର
କେନ୍ଦ୍ରାପଡ଼ା କଲେଜ,
କେନ୍ଦ୍ରାପଡ଼ା କଟକ

ପ୍ରଥମ ପ୍ରକାଶ
ମହାଳୟା, ୧୯୭୫ ।

ପ୍ରକାଶକ କୃଷ୍ଣଚନ୍ଦ୍ର ବେହେରା
ବୁକ୍ସ ଆଣ୍ଡ ବୁକ୍ସ
ବିନୋଦ ବିହାରୀ, କଟକ-୨

ଶିଳ୍ପୀ ଶ୍ରୀ ଅସିତ ମୁଖାର୍ଜି
ମୁଦ୍ରଣ ପ୍ରିଣ୍ଟେକ୍ସ, କଟକ-୨
ମୂଲ୍ୟ ଚାରିଟଙ୍କା ମାତ୍ର
ବନ୍ଧେଇ ଏକଟଂକା ସ୍ୱତନ୍ତ୍ର ।

BRUTTA

*(Anthology of Poems)*
by
*Prof.* Dipak Mishra

*Publisher*—Sri K. C. Behera
**Books & Books**
Binodbihari, Cuttack-2

First Edition
Mahalaya—1975

*Artist*—Asit Mukherjee
*Printed*—**Printex**
Cuttack-2

Price—Rupees Five only

# ଏ ସଂକଳନ ଭିତରେ





କବିଂକ ଅନ୍ୟାନ୍ୟ ଗ୍ରନ୍ଥ—

ଅପମାପିକା—୧୯୬୧

ଦୀପକ ମିଶ୍ରଂକ କେତୋଟି କବିତା—୧୯୬୩

ଅନୁଷ୍ଟୁପ୍—୧୯୬୮

ନିକ୍ଷିପ୍ତ ହ୍ରଦ—୧୯୭୦

ନିର୍ଜନ ନକ୍ଷତ୍ର—୧୯୭୧

ମଧ୍ୟାହ୍ନର ଛାଇ—୧୯୭୪

## କୃତଜ୍ଞ ରହିଲି……

"ବୃତ୍ତ" ମୋର ସପ୍ତମ କବିତା-ସଂକଳନ । କଳେବର ଦୃଷ୍ଟିରୁ ଏହା ଯେ କ୍ଷୀଣକାୟ ତା'ର ସୂଚନା ଏ ନିଜେ । ତେବେ ଏପରି ଏକ ସଂକଳନର ତାତ୍ପର୍ଯ୍ୟ ଯଥେଷ୍ଟ, କବିତାମାନଂକ ଅନ୍ତଃସ୍ୱରର ଐକ୍ୟତାନର ପୃଷ୍ଠଭୂମିରେ । ଜୀବନର ବିଭିନ୍ନ ଅନୁଭୂତି ଓ ଅଭିଜ୍ଞତା; ପୁଣି ସେହି ସେହି ଅଭିଜ୍ଞତାର ଅନୁଶୀଳନ ମୋର କବିତାର ମୂଳବିନ୍ଦୁ; ଏହା ମୁଁ ବହୁବାର କହିଛି । ତେବେ ଏ କଥା ମୁଁ ବାରଂବାର ନିଜକୁ ବୁଝାଉଛି ଯେ ପ୍ରତ୍ୟେକ ଅଭିଜ୍ଞତା ଓ ଅନୁଭୂତି କେବେ କବିତା ହୁଏ ନି; ହୁଏ ନି କବିତାର ବୃତ୍ତ ବା ପରିଧି; ଏପରିକି ଅସ୍ପଷ୍ଟ ରେଖା ମଧ୍ୟ । କିନ୍ତୁ କୌଣସି କୌଣସି ଅନୁଭୂତି ଓ ତାହାର ଅନ୍ତଃର୍ନିହିତ ପ୍ରଭାବ ଏତେ ବେଶୀ ତୀବ୍ରତା ଆଣେ; ଯାହାର କାବ୍ୟିକ-ଆତ୍ମା ପ୍ରକାଶ ସେ ନିଜେ ହିଁ କରିଥାଏ । ଏ ସଂକଳନର ସମୁଦାୟ କବିତା ଜୀବନର ଗୋଟିଏ ଅବସ୍ଥାର ଅନେକ ଅନୁଭୂତିର ଫଳ ସ୍ୱରୂପ; ସେଇଥିପାଇଁ ଏମାନଂକୁ ଏକାଠି କରି ରଖିଦେଲି ।

ବିଶ୍ୱାସ ; ମୋର ଅନ୍ୟାନ୍ୟ ଛଅଟୋଟି ସଂକଳନ ପରି "ବୃତ୍ତ" ଓଡ଼ିଆ କବିତାର ଏକନିଷ୍ଠ ତଥା ବିଦଗ୍ଧ ପାଠକଂକୁ ସ୍ପର୍ଶ କରିବ ଏବଂ ସେ ସ୍ପର୍ଶର ଗଭୀରତା ହିଁ ଏଇ କବିତାମାନଂକ ମୂଲ୍ୟାୟନ ପାଇଁ ଏକମାତ୍ର ମାପକାଠି ।

ସାଂପ୍ରତିକ ଓଡ଼ିଆ କବିତା ଓ ମୋର ସାମାନ୍ୟତମ କାବ୍ୟିକ ସୃଷ୍ଟି ସଂପର୍କରେ ସମାଲୋଚକ ଓ ଅଧ୍ୟାପକ ବଂଧୁ ଶ୍ରୀଯୁକ୍ତ ବୈଷ୍ଣବ ଚରଣ ସାମଲ ଯେଉଁ ମୂଲ୍ୟାଂକନ କରିଛଂତି, ସଂପୂର୍ଣ୍ଣ ନିଜସ୍ୱ ଅନୁଧ୍ୟାନ ଓ ଅନୁଶୀଳନର ଭିତ୍ତିରେ; ସେଥିପାଇଁ ମୁଁ ତାଙ୍କୁ ଆଂତରିକ ସ୍ନେହ ଓ କୃତଜ୍ଞତା ଜ୍ଞାପନ କରୁଛି ।

ସଂପୃକ୍ତ କବିତାମାନେ ବିଭିନ୍ନ ସମୟରେ "ଝଂକାର' "ନବରବି', "ଆସଂତା କାଲି ' "ସପ୍ତର୍ଷି", "ସମାବେଶ" ପ୍ରଭୃତି ପତ୍ରିକାରେ ପ୍ରକାଶିତ ଓ କେତେକ ଆକାଶବାଣୀ କଟକ କେଂଦ୍ରରେ ପ୍ରଚାରିତ । ସଂଶ୍ଳିଷ୍ଟ ସଂପାଦକ ଓ କର୍ତ୍ତୃପକ୍ଷଙ୍କୁ ଧନ୍ୟବାଦ ଜଣାଉଛି ଏଥି ସହିତ ।

ମୋର ଆନ୍ତରିକ ଶୁଭେଚ୍ଛା ପ୍ରକାଶକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ବେହେରାଙ୍କୁ; ଯାହାଙ୍କ ଉତ୍ସାହରେ "ବୃତ୍ତ" ଆଜି ସୂର୍ଯ୍ୟାଲୋକର ସ୍ପର୍ଶ ଅନୁଭବ କରିପାରିଲା ।

ମହାଳୟା—୧୯୭୫

କେଂଦ୍ରାପଡ଼ା କଲେଜ

କେଂଦ୍ରାପଡ଼ା, କଟକ

ଦୀପକ ମିଶ୍ର

# "ବୃତ୍ତ" ଓ କବି ଦୀପକ ମିଶ୍ର

'ବୃତ୍ତ' କବି ଦୀପକ ମିଶ୍ରଙ୍କର ପ୍ରଥମ କବିତା ସଂକଳନ । ବିଗତ ପନ୍ଦର ବର୍ଷ ଧରି କବି ନିରବଚ୍ଛିନ୍ନ ଭାବରେ ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ନାନାପରୀକ୍ଷା ନିରୀକ୍ଷା କରିଆସିଛନ୍ତି—ତଥାପି ତାଙ୍କର ପରୀକ୍ଷାର ଶେଷ ନାଇ । ଜୀବନର ବିରାଟ ବିପୁଳ ବୃତ୍ତର କେନ୍ଦ୍ର ବିନ୍ଦୁରେ କବି ଏକ ପାଦ ରଖି ଅନ୍ୟପାଦକୁ ସେହି ବୃତ୍ତର ପରିଧିରେ ଅବସ୍ଥାପିତ କରି ସତତ ଘୂର୍ଣ୍ଣାୟମାନ । ତାଙ୍କର କାବ୍ୟ ପୁରୁଷ ସ୍ଥିର ନୁହେଁ—ଗତିଶୀଳ ଏକ ପୂର୍ଣ୍ଣ ସତ୍ୟ ଲାଭ କରିବା ଆଶାରେ । ଏହି ସତ୍ୟ ପାର୍ଥିବ ଜୀବନର ସ୍ଥୂଳ ସତ୍ୟ ନୁହେଁ—ପାର୍ଥିବ ଜୀବନର ପ୍ରେମ ଓ ଯନ୍ତ୍ରଣା, ବ୍ୟଥା ଓ ବିଫଳତା, ନୈରାଶ୍ୟ ଓ ଶୋଚନୀୟତା, ବିଚ୍ଛିନ୍ନତା ଓ ନିଃସଙ୍ଗତା, ପ୍ରାପ୍ତି ଓ ଅପ୍ରାପ୍ତି—ଏହି ଦର୍ପିତ ଅବିଚଳିତ କାବ୍ୟପୁରୁଷକୁ ବେଳେ ବେଳେ ବିଚଳିତ କରିଛି ସତ୍ୟ ମାତ୍ର ଲକ୍ଷ୍ୟଚ୍ୟୁତ କରାଇ ପାରିନାହିଁ—ଏକ ଇନ୍ଦ୍ରିୟୋତ୍ତର ତୈଜସ ସତ୍ୟର ଉଦ୍‌ଘାଟନ ପାଇଁ ଏହି କାବ୍ୟ ପୁରୁଷ ଗତିକରିଛି ଦୁର୍ନିବାର ଭାବରେ । ସପ୍ତଦଶକର ଆରମ୍ଭରେ ଏହି କାବ୍ୟପୁରୁଷ 'ଅସମାପିକା'ର ଯନ୍ତ୍ରଣାକ୍ତ ଅନ୍ତର୍ଧ୍ୱନି ସୃଷ୍ଟି କରି ପରେ ପରେ ନିଃସଙ୍ଗ ବ୍ୟକ୍ତିଚିତ୍ତର ମୃତ୍ୟୁମୁଖୀନ କେତୋଟି ଅନ୍ତଃସଂଳାପକୁ ନିଜେ ଶୁଣି, ଶୁଣାଇଛି ମୃଗମଣିଷକୁ ଏବଂ ପରେ ଅର୍ଥାତ୍ ୧୯୭୮ ମସିହା ବେଳକୁ ସପ୍ତଦଶକର କାବ୍ୟପୁରୁଷର ମଧ୍ୟବର୍ତ୍ତୀ ଅନ୍ତର୍ଦୃଷ୍ଟି ଭାରତୀୟ ବୈଦିକ ପରମ୍ପରାରେ ଅନୁରଣିତ ହୋଇ ତୈଜସ-ଭାବ-ଭାବିତ ଊର୍ଦ୍ଧ୍ୱାୟିତ ଆତ୍ମ-ପୁରୁଷର ସାଙ୍ଗୀତିକ ସଲିଳ 'ଅନୁଷ୍ଟୁପ୍' ଶୁଣାଇଛି । ପ୍ରଥମ ପର୍ଯ୍ୟାୟର ସମାଜ-ମଣିଷ କ୍ରମେ ମଧ୍ୟବର୍ତ୍ତୀ ପର୍ଯ୍ୟାୟରେ ବ୍ୟକ୍ତି-ମଣିଷ ସ୍ତରକୁ ଗତିକରି ଏକାକୀତ୍ୱବୋଧର ଉଦାତ୍ତ ସାମସଙ୍ଗୀତ ଗାନ କଲାବେଳେ ଏହି ବ୍ୟକ୍ତିନିଷ୍ଠ କାବ୍ୟପୁରୁଷ କାହିଁକି ସମାଜ-ମଣିଷର ବିପୁଳ ବୃତ୍ତରୁ ଖାପଛଡ଼ା ମନେ ହୋଇଥାଏ ଏବଂ ଏହା ହେବାହିଁ ସ୍ୱାଭାବିକ; ଯେହେତୁ ବ୍ୟକ୍ତି-ମଣିଷର ଏକାନ୍ତ ସୂକ୍ଷ୍ମ ସତ୍ତା ଓ ସ୍ୱଚ୍ଛବୋଧର ଅନ୍ତର୍ଜଗତଠାରୁ ସମାଜ-ମଣିଷର ସ୍ଥୂଳ-ଭାବ-ଜଗତ ଭିନ୍ନ ଏକ ଊର୍ଦ୍ଧ୍ୱାୟିତ ଜଗତପାଇଁ ଆଶାନ୍ୱିତ ସମ୍ବେଗାତ୍ମକ ଅଭିବ୍ୟକ୍ତି । ତେଣୁ 'ଅନୁଷ୍ଟୁପ୍'ର ଅଭିବ୍ୟକ୍ତି ବ୍ୟକ୍ତିପୁରୁଷର ଯନ୍ତ୍ରଣାକ୍ତ ଅଭିବ୍ୟକ୍ତି ଏବଂ ନୂତନ କିଛି ଅନ୍ୱେଷାର ଉଚ୍ଚକିତ ଅଭିଳାଷ । ଏହି କାରଣରୁ ସପ୍ତଦଶକର ଶେଷବେଳକୁ ଏହି କାବ୍ୟପୁରୁଷ କ୍ରମେ ଧ୍ୟାନଗମ୍ଭୀର ହୋଇପଡ଼ିଛି ଓ ତାର

ଇଲ୍‌କାକୁ ଏକ "ନିଷିଦ୍ଧ ହ୍ରଦ" ରୂପେ ପରିକଳ୍ପନା କରିଛନ୍ତି । ଏହି ହ୍ରଦ ତରଙ୍ଗ ବିଧୂନିତ—ମୃତ୍ୟୁର ତୀବ୍ର ଅଥଚ ବେଗବାନ୍ ସ୍ରୋତ ଏହା ମଧ୍ୟରେ ପ୍ରବାହିତ । କେତେ ଭୀଷଣ ଏହି ହ୍ରଦ;—ତେଣୁ ନିଷିଦ୍ଧ; କାହାପାଇଁ ନିଷିଦ୍ଧ ? ଏହି କ୍ଷେତ୍ରରେ ସମାଜ-ମଣିଷ ଅନୁଭବ କରେ ଏହି ହ୍ରଦ ସେମାନଙ୍କ ପାଇଁ ନିଷିଦ୍ଧ—ସେମାନେ ଦୂରରୁ ଦେଖନ୍ତି ବ୍ୟକ୍ତି-ମଣିଷ ଏହି ହ୍ରଦରେ ଅବଗାହନ କରେ—ବିକଳ ବିଧୁର ବାଣୀ ପ୍ରକାଶ କରେ । ତଥାପି ସେମାନେ ସେହି ବ୍ୟକ୍ତି ମଣିଷ ନିକଟକୁ ଯାଇ ପାରନ୍ତି ନାହିଁ—ହ୍ରଦର ଗମ୍ଭୀରତାକୁ ଉପଲବ୍ଧି କରନ୍ତି ନାହିଁ—ଭୀଷଣତାକୁ ଅନୁଭବ କରିପାରନ୍ତି ନାହିଁ । ବ୍ୟକ୍ତି-ମଣିଷ ଯେତେବେଳେ ଉପଲବ୍ଧି କଲା ତାକୁ ସେହି ଭୀଷଣ ହ୍ରଦରୁ କେହି ରକ୍ଷାକରୁ ନାହିଁ—କେହି ତା'ପାଖକୁ ଯାଉ ନାହିଁ—ସମସ୍ତେ ନିଜ ନିଜର ଅହଂକୁ ନେଇ ନିର୍ବିକାର ଭାବରେ ଗନ୍ତସ୍ଥାନ—ହେତକ ବେଳେ ସେହି ନିଃସଙ୍ଗ ବ୍ୟକ୍ତି ମଣିଷର ଅନ୍ତରାତ୍ମାକୁ ମୃତ୍ୟୁର ଶୀତଳ ବାହୁ ସତେଯେପରି ଆଲିଙ୍ଗନ କରୁଛି—ଏଥିରୁ ତାର ମୁକ୍ତି ନାହିଁ—ତାର ପ୍ରେମ, ପ୍ରଣୟ, ଇନ୍ଦ୍ରିୟ ଜଗତ, ସମସ୍ତର ଜ୍ୱାଳା ସବୁ ଯେପରି ଅପସରି ଯାଉଛି—ଊର୍ଦ୍ଧ୍ୱବାହୁ ହୋଇ ସେହି ବ୍ୟକ୍ତିମଣିଷ ଉପରକୁ ଚାହିଁରହୁଛି—'ନିର୍ଜନ ନକ୍ଷତ୍ର'ର ନିର୍ଜନତା ସତ୍ତ୍ୱେ ତଥାପି ସ୍ଥିର ଜ୍ୟୋତି ସତେଯେପରି ସେହି ନିଃସଙ୍ଗ ବ୍ୟକ୍ତି-ପୁରୁଷକୁ ଦେଇଛି ଆଶା ଆଶ୍ୱାସନା । ଅଷ୍ଟମଦଶକର ଆରମ୍ଭରେ ଏହି ଆଶାର ବାଣୀ ଶୁଣାଇ ପରେ ପରେ ଏ କାବ୍ୟ ପୁରୁଷର 'ନିଷିଦ୍ଧ ହ୍ରଦ'ରେ "ମଧ୍ୟାହ୍ନର ଛାଇ" ପ୍ରତିବିମ୍ବିତ ହୋଇଛି । ମଧ୍ୟାହ୍ନର ଛାଇ ସତ୍ତା ଓ ଛାୟା ଏକ ଏବଂ ଅଭିନ୍ନ—ବସ୍ତୁ ଓ ସତ୍ତା—ବ୍ୟକ୍ତି ଓ ଜଗତ – ଆତ୍ମା ଓ ପରମ—ସବୁଯେପରି ଏକ ବିନ୍ଦୁକୁ ଆସିଯାଉଛି । ସେହି ନିଷିଦ୍ଧ ହ୍ରଦ ମଧ୍ୟରେ ନିର୍ଜନ ନକ୍ଷତ୍ରକୁ ବ୍ୟକ୍ତି-ମଣିଷ ସାଥୀ ବୋଲି ଗ୍ରହଣ କରିନେଇ ତଥାପି ସେ ଭାବୁଛି—

"ମୃତ୍ୟୁର ଅହଂକାର ଯେ ସେ କେବେ କାହାକୁ
ଦୟା କରେ ନାହିଁ ଏବଂ ସେ କେବଳ ଉଡ଼ାଇ ଜାଣେ
ଅନ୍ୟର ଲୁଗାକୁ ବିନା ପବନରେ—, ପୁନଶ୍ଚ ତାହାର
କୌଣସି ଛାଇ ପଡ଼େ ନାହିଁ ତା'ର ଗମନ ପୂର୍ବରୁ ।"

ଜନ୍ମସ୍ଥାନ—(ମଧ୍ୟାହ୍ନର ଛାଇ)

ଏକ ଅନାସକ୍ତିରେ ନେଇ ଏହି ବ୍ୟକ୍ତି-ମଣିଷ ମୃତ୍ୟୁର ସାର୍ବଜନୀନତାକୁ ଉପଲବ୍ଧି କରିଛି । ଆଧୁନିକ ବହୁ ମୃତ୍ୟୁକାତର କବିପରି ଏହି କାବ୍ୟପୁରୁଷ ମୃତ୍ୟୁକାତର ନୁହେଁ—ମୃତ୍ୟୁକୁ ଏ କାବ୍ୟପୁରୁଷ ଭୟାର୍ତ୍ତ ଦୃଷ୍ଟିରେ ଆଦୌ ଦେଖି

ନାହିଁ—ମୃତ୍ୟୁ ଭିତରେ ଏହି କାବ୍ୟପୁରୁଷ ସନ୍ଧାନ କରୁଛି ଅମୃତର ସତ୍ତା—
ବୈଦିକ ଋଷି ପରି ତେଜସ ଦୃଷ୍ଟି ନେଇ ଏହି କାବ୍ୟ ପୁରୁଷ ଘୋଷଣା କରନ୍ତି—

"ମୁଁ ପୋଡ଼ୁଛି ସେ ନିଆଁ ରେ
ଯାହା ଲିଭିଯାଇ ପାରେ;
ତୁମର ସେ ପଦ୍ମଫୁଲ ଆଖିର ଦୃଷ୍ଟିରେ
ହୁଏତ ମୁଁ ପାଇପାରେ ନୂତନ ପୃଥିବୀ
ଏକ ତୁମରି ସୃଷ୍ଟିରେ ।

ମୁଁ ଖାଲି ପୋଡ଼ିଯିବ
ପୋଡ଼ି ଜଳି ପାଲଟିବ କୁଞ୍ଚିତ ଅଙ୍ଗାର
କିନ୍ତୁ ମୁଁ ସ୍ଥିର ଓ ନିଶ୍ଚଳ
ଏ ଅଙ୍ଗାର ଦିନେ ହେବ ସହସ୍ର ଆଲୋକ ଗୋଟିଏ ହୀରାର·

ସମର୍ପଣ—(ମଧ୍ୟାହ୍ନର ଛୁରି)

ନିର୍ଜନ ନକ୍ଷତ୍ର ପରି ଏହି କାବ୍ୟ ପୁରୁଷ ସ୍ଥିର ଓ ଅବିଚଳ । ଏ କାବ୍ୟ ପୁରୁଷ କେବଳ ମୃତ୍ୟୁକୁ ଶେଷ ବୋଲି ମନେ କରି ନାହିଁ—ସହସ୍ର ଆଲୋକର ଦୀପ୍ତି ନେଇ ପ୍ରକାଶିତ ହେବାକୁ ଏବଂ ଏକ ନୂତନ ପୃଥିବୀ ଲାଭ କରିବାକୁ ଦୁର୍ବାର ଆଶା ପୋଷଣ କରିଛି ବୈଦିକ ଋଷିଙ୍କର ଉକ୍ତି "ମୃତ୍ୟୁର୍ମାଂ ଜ୍ୟୋତିର୍ଗମୟ" ପରି । ତେଣୁ ଏହି କାବ୍ୟପୁରୁଷର ମୃତ୍ୟୁ ଚେତନା ପାଶ୍ଚାତ୍ୟ ଜଗତର ମୃତ୍ୟୁଚେତନା ନୁହେଁ—ଏହି ପ୍ରାଚ୍ୟ ଭୂଖଣ୍ଡର ପରମ୍ପରା ପ୍ରସୂତ ମୃତ୍ୟୁଚେତନା—ଯେଉଁ ଚେତନା ଭିତରେ ଏହି କାବ୍ୟପୁରୁଷ ଯନ୍ତ୍ରଣା ଲାଭ କରିଛି ସତ ମାତ୍ର ଏହି ଯନ୍ତ୍ରଣା କେବଳ ମୃତ୍ୟୁ ପାଇଁ ନୁହେଁ; ନୂତନ ଆଲୋକ ପାଇଁ—ନୂତନ ବିଭୂତି ପାଇଁ । ଫଳରେ "ମଧ୍ୟାହ୍ନର ଛୁରି"ର ବ୍ୟକ୍ତି-ମଣିଷ 'ବୃତ୍ତ'କୁ ଆତ୍ମ-ମଣିଷରେ ରୂପାନ୍ତରିତ କରିଦେଇଛି ଓ ଏହି ଆତ୍ମ-ମଣିଷ ପ୍ରଶ୍ନ କରିଛି—

"କିଏ କହିବ ସେଠାରେ କେହି ପୁଷ୍ପବୃଷ୍ଟି
କରେ ଅହୋରାତ୍ର କିମ୍ବା ମୃତ୍ୟୁପରେ ଝରି
ବିଶୁଦ୍ଧ ବିଭୂତି ପରି ଲୋକଙ୍କ କାନରେ ।"

—ଘାରିହେବା

ମୃତ୍ୟୁ ହେଉଛି ଏହି କାବ୍ୟପୁରୁଷର ଦୃଷ୍ଟିରେ 'ବଣ୍ଡ୍ରେ ବିଭୂତି' । ଏ ଯାବତ୍ ଓଡ଼ିଆ କବିତା କ୍ଷେତ୍ରରେ ବା ଏହି ଲେଖକ ଯେତିକ ବିଦେଶୀ ଓ ଭାରତୀୟ କବିତା ପଢ଼ିଛି ମୃତ୍ୟୁକୁ କେହି ବିଭୂତି ଅର୍ଥରେ ଗ୍ରହଣ କରି ନାହାନ୍ତି । ଯେଉଁଥିପାଇଁ ଏହି କାବ୍ୟପୁରୁଷର ଏ ଦିଗରେ ରହିଛି ଏକ ସ୍ୱାତନ୍ତ୍ର୍ୟ । ଏହି କାବ୍ୟ ପୁରୁଷର ଆତ୍ମଲୀନ ଆତ୍ମ-ସତ୍ତା ପୁଣି ଦୁନିଆର ବିଷକୁ ନୀଳକଣ୍ଠପରି ପାନ କରି ଅମୃତର ବାଣୀ ଶୁଣାଇଛି—

"ଦୁଃଖର ଦୀର୍ଘଶ୍ୱାସ
ହେଉଛି ସମସ୍ତର ଏକଲବ୍ୟ ଧ୍ୟାନ,
ସୁଖର ସୃଷ୍ଟି ବଳୟ
ହେଉଛି ସମସ୍ତର ଇମନ୍ କଲ୍ୟାଣ ।"

—ପାରିହେବା

ସମସ୍ତ ନିନ୍ଦା ପ୍ରଶଂସାର ଊର୍ଦ୍ଧ୍ୱରେ ଚଣ୍ଡୀଦାସ ପରି ଏହି କାବ୍ୟ ପୁରୁଷର ଆତ୍ମ-ମଣିଷ ସବୁ ସୁଖ ଦୁଃଖ ଭୁଲି ଊର୍ଦ୍ଧ୍ୱାୟିତ ଆଲୋକରେ ଉଚ୍ଛକିତ ହୋଇ ଉଠିଛି । ମଧ୍ୟାହ୍ନର ପ୍ରଚଣ୍ଡ ଉତ୍ତାପପରେ ଶାନ୍ତଶୀତଳ ସନ୍ଧ୍ୟା ଆସେ । କ୍ଲାନ୍ତ ପଥିକ ପରି ମଣିଷ ବସି ନିଜ କଥା କହେ ଓ ନିଜେଇ ଶୁଣେ । ଏକପ୍ରକାର ତଟସ୍ଥ ଅବସ୍ଥାରେ ମଣିଷ ଉପନୀତ ହୋଇ ସୁଖ ଦୁଃଖ, ଜୀବନ ମୃତ୍ୟୁକୁ ସମାନ ପର୍ଯ୍ୟାୟରେ ଦେଖେ । ଜୀବନର ବିପୁଳ ବୃତ୍ତରେ ପ୍ରେମ, ମୃତ୍ୟୁ, ଅନୁଶୋଚନା, ଯନ୍ତ୍ରଣା ଓ ସର୍ବୋପରି ଊର୍ଦ୍ଧ୍ୱଗତି ପ୍ରବୃତ୍ତିର ବାରମ୍ବାର ଅତିକ୍ରମଣକୁ ଏହି ତଟସ୍ଥ ଅବସ୍ଥାରେ ଅନୁଭବ କରିହୁଏ । ଏହି ଅବସ୍ଥାରେ ମଣିଷ ଯନ୍ତ୍ରଣାକୁ ଆପଣାର ମନେ କରେ । ଯନ୍ତ୍ରଣା ତାକୁ ଉଦ୍‌ବ୍ୟସ୍ତ କରାଇ ପାରେ ନାହିଁ—ଯନ୍ତ୍ରଣାଇ ଜୀବନ—ଯନ୍ତ୍ରଣାଇ ଆନନ୍ଦ । ତେଣୁ ଏହି କାବ୍ୟପୁରୁଷ ପ୍ରଶ୍ନ କରିଛି—

"କେଉଁରାଧା ପରିପୂର୍ଣ୍ଣ ଯଦି ନାହିଁ
ଯମୁନା ଓ କାଳିନ୍ଦୀ ବିଜନ,
ଯଦି ନାହିଁ ଯନ୍ତ୍ରଣାର ଧିକ ଧିକ
ଜଳିଯିବା ବଇଁଶୀର ଶୂନ୍ୟ ନିବେଦନ,
ଯଦି ନାହିଁ ବିଜନମସ୍ତ ନିଶାର ନିକ୍ୱଣ—,
ତେବେ କେଉଁ ସୁନାର ପ୍ରତିମା ସୀତା
ଅବସାନ ଘଟାଇପାରେ ଶ୍ରୀରାମଙ୍କ ଆନ୍ତରିକ ଦୁଃଖର ଚେତନା"

—"ଅପଭ୍ରଂଶ"

॥ ଘ ॥ ବୃତ୍ତ

ଅତଏବ ଯନ୍ତ୍ରଣାକୁ ଏହି କାବ୍ୟ ପୁରୁଷ ସ୍ୱାଗତ କରନ୍ତି ଏବଂ ଯନ୍ତ୍ରଣା ମଧ୍ୟ ଦେଇ ଜୀବନର ସତ୍ୟକୁ ଉଦ୍‌ଘାଟନ କରନ୍ତି । ଏହି ଯନ୍ତ୍ରଣାରେ ଅଛି ଆନ୍ତରିକତା— ଏହି ସଙ୍କଟରେ ଅଛି ଆନ୍ତ୍ରିକତା (ଆଧୁନିକ ଅଧିକାଂଶ କବିଙ୍କ ପ୍ରତି ଯାହା ଅଭିଯୋଗ କରାଯାଏ ଯେ ଏ ସଙ୍କଟ ବିଦେଶାଗତ ଏଥିରେ ଆନ୍ତ୍ରିକତା ନାଇ—ଦୀପକ ବାବୁଙ୍କ ପ୍ରତି ଏହି ଅଭିଯୋଗ ଅନ୍ତତଃ ଏହି କବିତା ସଙ୍କଳନ ପାଇଁ ପ୍ରଯୁଜ୍ୟ ନୁହେଁ) । ସ୍ଥୂଳ ଦେହର ଯନ୍ତ୍ରଣାକୁ ଆତ୍ମସ୍ଥ ଯନ୍ତ୍ରଣାରେ ରୂପାନ୍ତରିତ କରି ଏହି କାବ୍ୟ ପୁରୁଷ ଇନ୍ଦ୍ରିୟୋତ୍ତର ଆତ୍ମ-ସତ୍ୟକୁ ଉପଲବ୍ଧି କରନ୍ତି ଏବଂ ଏକ ଅଧ୍ୟାତ୍ମ-ଆଲୋକରେ ଏହା କ୍ରମେ ଆଲୋକିତ ହୋଇଯାଉଛି । ଲୁହ ଆଉ ହସ, ପ୍ରେମ ଆଉ ଜୀବନ, ମୃତ୍ୟୁ ଆଉ ଯନ୍ତ୍ରଣା ଭିତରେ ଗୋଟିଏ ନୂତନ ଆଶାର ପୃଥିବୀ ଫୁଟି ଉଠୁଛି ଏବଂ ଏହି କାବ୍ୟପୁରୁଷ କଳାପାହାଡ଼ କବଳରୁ ଜଗନ୍ନାଥଙ୍କ ବ୍ରହ୍ମକୁ ବିଶର ମହାନ୍ତି ରକ୍ଷା କଲାପରି ଖୋଜୁଛନ୍ତି ସେହି ଅନାଦି ବ୍ରହ୍ମଙ୍କୁ—

"ହେଲେ ହେଲି ମୁଁ ଅଶୌଚ ବିଶର ମହାନ୍ତି
ପାଦରୁ ମୁଣ୍ଡଯାଏ ସମସ୍ତର ନାମାବଳୀ ଯଦ୍ରୃଚ୍ଛା ଝୁଲାଇ
ଶ୍ରୀହୀନ ହାତରେ ଖୋଜେ ପିତାଙ୍କର ନାଭିପଦ୍ମ ଅବା
ପଦ୍ମମଣି ଯାହା ପୋଡ଼ୁ ପୋଡ଼ୁ ଦୈବାତ୍ ରକ୍ଷା ପାଇଗଲା
ଦୁଷ୍ଟ ଏକ ଯବନର ହାତୀ ଘୋଡ଼ା ଧରିବୃତ୍ତି ନଥା ରି କାଳରୁ ।"

—"ଲେଡ଼ାନାଇଁ"

ଏହି ବ୍ରହ୍ମ ଉପଲବ୍ଧି ଆହୁରି ସ୍ପଷ୍ଟ ହୋଇ ଉଠିଛି "କାୟା ପ୍ରବେଶ" କବିତାରେ । ପୌରାଣିକ ମିଥ୍ ମାଧ୍ୟମରେ ଏହି କାବ୍ୟ ପୁରୁଷ ଘୋଷଣା କରନ୍ତି ;—

"କ୍ଲାନ୍ତ ମୟୂରଦଳ ଭଳି ନଈ ଡ଼ାକୁଛି
ଯୋହାଗରେ ଆସ ତୀରବାସୀ, ଆସ ବସୁଦେବ,
ଆସ ଦେବକୀ, ଯଶୋଦା, ଆସ ପଶୁପକ୍ଷୀ,
ରାତିର ଦୁଃସ୍ୱପ୍ନ ଯେତେ ଧୋଇ ନିଅ
ରାତି ଲାଗି ଧୋଇ ଦେବାପରି ଓ
ଆକାଶ କପରି ଦେଖ ମୋ ଗ୍ରୀବାକୁ ଧରିଛି ଜାବୋଡ଼ି
ମୁଁ କରିଛି କ୍ଷମା ତାକୁ
ଭୁଲିଛି ତା' ହାତର ବିଷର ଯନ୍ତ୍ରଣା ।"

—'କାୟା-ପ୍ରବେଶ'

॥ ଙ ॥ ବୃତ୍ତି

ଏ କବିତାରେ ସମସ୍ତ ବିଶ୍ୱ ଏକାକାର ହୋଇଯାଉଛି—ସବୁ ଯନ୍ତ୍ରଣା, ସବୁ ଦୁଃଖ, ସବୁ ଦୁଃସ୍ୱପ୍ନ ଅପସରି ଯାଉଛି—କାବ୍ୟ ପୁରୁଷ "ସମର୍ପଣ ନିଶାରେ ବିଭୋର" ହୋଇ ଉଠୁଛି । ଅତଏବ ଦୀପକ ବାବୁଙ୍କର କାବ୍ୟପୁରୁଷର ପ୍ରଥମ ଓ ପ୍ରଧାନ ସ୍ୱରୂପଟି ହେଲା ମୃତ୍ୟୁ ଓ ଯନ୍ତ୍ରଣା ମଧ୍ୟ ଦେଇ ଇନ୍ଦ୍ରିୟୋଦ୍ଭବ ଉର୍ଦ୍ଧ୍ୱଗ ଅଧ୍ୟାତ୍ମ ସତ୍ତାକୁ ଉପଲବ୍ଧି କରିବା ଏବଂ ସମସ୍ତ ଯନ୍ତ୍ରଣାକୁ ଅମୃତରେ ପରିଣତ କରି ସନାତନ ମାନବିକ ସତ୍ୟକୁ ଉଦ୍‌ଘାଟନ କରିବା । ଏହି କାବ୍ୟପୁରୁଷ କହେ "ମୋର ଦେହ ଯାକ ସ୍ୱର୍ଗର ପାଉଁଶ ଉଡ଼ୁଥିମାରେ ମୃଗଶିଶୁ ସମ/ନଚେତ୍ ଏ ଦେହ ଅଟେ ନିଶ୍ଚିଣି ଏକ ସ୍ୱର୍ଗଦ୍ୱାର ପାଇଁ ।" ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଏହି କାରଣରୁ ଦୀପକ ମିଶ୍ରଙ୍କର ମୃତ୍ୟୁ ଚେତନା ଧର୍ମୀ କବିତା ସ୍ୱତନ୍ତ୍ର ଏବଂ ଭାରତୀୟ ଐତିହ୍ୟ ଚେତନା ଉଦ୍ଦୀପ୍ତ ସାର୍ବଜନୀନ ମାନବିକ ସମ୍ବେଦନାତ୍ମକ ପାରିପାର୍ଶ୍ୱିରେ ରୁଦ୍ଧିମନ୍ତ ।

—୨—

'ବୃତ୍ତ' କାବ୍ୟ ଜିଜ୍ଞାସାର ଅନ୍ୟତମ ପ୍ରକୃତ ହେଲା ଯାତ୍ରିକ ଜୀବନରେ ପ୍ରେମାନୁଭୂତି । ଏ ପ୍ରେମ ଅନାବିଳ—ଦେହର ସୀମିତ ସୀମାବଳୟ ଅତିକ୍ରାନ୍ତ ଦିବ୍ୟ ପ୍ରେମ । ଏ ପ୍ରେମାନୁଭୂତିରେ ଅଛି ଆନ୍ତରିକତା—ଅଛି ଆତ୍ମ ମଣିଷର ନିର୍ଲିପ୍ତ ଅଭିବ୍ୟକ୍ତି । ମଣିଷର ବହୁ ମୌଳିକ ସମସ୍ୟା ମଧ୍ୟରେ ନାରୀପୁରୁଷର ପ୍ରେମ ସମସ୍ୟା ଅନ୍ୟତମ ଏବଂ ଏହି କାରଣରୁ ଫ୍ରଏଡ଼ କହନ୍ତି "The world is the symbol of man's secret desires" ମଣିଷ ମନର ସଂଗୁପ୍ତ ଅଭିପ୍ସାର ପ୍ରତୀକ ହେଉଛି ଏହି ବିଶ୍ୱ । ଅବଚେତନ ସ୍ତରରେ ଅବଦମିତ ହୋଇ ରହିଥିବା ବହୁ କାମନାହିଁ ମଣିଷର କାର୍ଯ୍ୟକଳାପର ଉତ୍ସ । (The source of man's activities is sexual impulse or the suppressed desires that lie hidden in the subconscious mind.) 'ବୃତ୍ତ'ର କାବ୍ୟ ପୁରୁଷ ମଣିଷର ସେହି ଅବଚେତନର ସଂଗୁପ୍ତ ରହସ୍ୟକୁ ଉପଲବ୍ଧି କରିଛି ଏବଂ ସେହି ରହସ୍ୟ ସ୍ଥୂଳରୁ ସୂକ୍ଷ୍ମକୁ ଗତି କରିଛି । ତେଣୁ ଏହି କାବ୍ୟ ପୁରୁଷ କହୁଛି ;—

"କିଏ ନ ଜାଣେ କହି ସ୍ନେହ ନିମ୍ନମୁଖୀ
କୋମଳ ପାଣିର ପ୍ରତ୍ୟଂଗ ପରି ସେ ଓଦାକରେ
ଜାଣି ଜାଣି ବିମର୍ଷ ମନକୁ, ଅଥଚ ଦେଖ
ସେ କେତେ ନିଃସହାୟ ନିଜେ—;ନହେଲେ

କୈତ ବନର ସେହି ତରୁଣ ସନ୍ନ୍ୟାସୀ କାହିଁ ହାତେ ଧରି
ଭିକ୍ଷା ପାତ୍ର ଗୁଣ୍ଡିଳ ମୁଠାଏ ପାଇଁ ଛଳନାରେ ବୁଲୁଥାନ୍ତି।
ଶ୍ରାବସ୍ତୀର ରାଜପଥେ ଅସ୍ତଗାମୀ ସୂର୍ଯ୍ୟର ମୁହଁରେ
ଦେଖି ନଜର ପ୍ରତୀକ୍ଷା—; ସେ କାହିଁ ଛୁଇଁଥାନ୍ତି।
ପ୍ରତ୍ୟେକ ଘରର କବାଟ ଯାହା ବନ୍ଦ ହୋଇ ରହିଅଛି।
ସନାତନ ଝରାର ଦୁଃଖରେ।'

—"ବିଗ୍ରହ"

ଏହି ହେଉଛି ସେହି ନମନୀୟ କାବ୍ୟପୁରୁଷର ହାର୍ଦ୍ଦିକ ଅଭିବ୍ୟକ୍ତି। ଏହି କାବ୍ୟପୁରୁଷ ଜାଣେ "ଆଗେ ପ୍ରେମ ଓ ପରେ ମୃତ୍ୟୁକୁ" ଆମେ କାଲ କାଲ ଧରି ଅପେକ୍ଷା କରିଛୁ। ଏହି ଅପେକ୍ଷା ମଧ୍ୟରେ "ଯଦି ଭଲହୁଏ ଖାଲି ମଣିଷ ହୃଦୟ ତେବେ ଯାଇ ଫୁଟେ ସେଇ ଫୁଲ ଯା'ର ନାହିଁ ଝରିବାର ଭୟ।" ଏହି ଭଲ ପାଇବା ଅନାବିଲ ହେଲେ ଏବଂ ହୃଦୟ ନିର୍ମଳ ଓ ପବିତ୍ର ହେଲେ ମୃତ୍ୟୁ ଭିତରେ ମଧ୍ୟ ମଣିଷ ବଞ୍ଚେ ଅନନ୍ତ କାଳ ବ୍ୟାପୀ ଏବଂ ତାର ଅନାହତ ଆତ୍ମାଫୁଲ ସବୁଦିନ ପାଇଁ ବିକଶିତ ହୋଇଉଠେ। ଏହି ଅନୁଭୂତିରେ ବୃତ୍ତ'ର କାବ୍ୟ ନାୟକ ଏକାତ୍ମ ଏବଂ ତେଣୁ ସେ କହେ "ମୋ ଛାତିରେ ଭଲ ପାଇବାର ଭୃଙ୍ଗୁପଦ ଚିହ୍ନ।" ଏହି କାବ୍ୟ ନାୟକର ପ୍ରେମ ଜ୍ୟୋତିସ୍ମାନ ଗ୍ରହଠାରୁ ଆହୁରି ଉଜ୍ଜ୍ୱଳ, ମାନସ ସରୋବରର ପ୍ରଶାନ୍ତ ନୀଳବକ୍ଷରେ ବିକଶିତ ଅମୃତମୟ ରକ୍ତକମଳର ରକ୍ତଠାରୁ ଆହୁରି ଗମ୍ଭୀର, କାଞ୍ଚନ ଜଙ୍ଘାର ତୁଷାରଧବଳ କାନ୍ତିଠାରୁ ଆହୁରି ପବିତ୍ର, କନ୍ୟା କୁମାରୀର ଶେଷ ଶିଳାଠାରୁ ଆହୁରି ଅପରୂପ ଓ ବିଚିତ୍ର, ଦକ୍ଷିଣ ଆକାଶ ଛୁଇଁ ଆସୁଥିବା ମଳୟ ପବନର ଚୁମ୍ବନରେ ବିଭୋର ଆମ୍ର ବକୁଳଠାରୁ ଆହୁରି ନିବିଡ଼, ଅବଗୁଣ୍ଠିତା ମାଟିଠାରୁ ଆହୁରି ମହିମାନ୍ୱିତ ଓ ପ୍ରଗାଢ଼। ତେଣୁ ଏହି କାବ୍ୟନାୟକ କହେ।

"ପ୍ରେମ ଏକ ରାଜ-ପ୍ରାସାଦ-;ମାଟି ଅବା ମାର୍ବଲରେ
ହେଉ ଓ ମୋ ଛାତିର ଆଲୋକ ଏବେ ବି
ଦିଶୁଛି ନିଖୁଣ ସେଇ ପଥର ଚଟାଣ ଉପରେ ଯେଉଁଠି
ତୁମର ଦେହଦିନେ ଜଳୁଥିଲା ତା'ର ନିଜ ଆଲୁଅରେ।"

—"ପବନର ବି କାନ ଅଛି"

'ବୃତ୍ତ'ର କାବ୍ୟନାୟକ ପ୍ରେମକୁ ଗମ୍ଭୀର ଭାବରେ ଅନୁଭବ କରିଛି। ପ୍ରେମାନୁଭୂତି ମଧ୍ୟଦେଇ ଏକ ନୂତନ ପୃଥିବୀ—ନୂଆ ମାଟିର କାମନା କରିଛି।

॥ ଛ ॥ ବୃତ୍ତ

ସେହି ପ୍ରେମ; ସିଂହାସନ ଟଳାଇ ଦେଇପାରେ—ମୃତ୍ୟୁର ମହୁରୀ ବଜାଇପାରେ । ପ୍ରେମ କେଉଁଠି ଶେଷ ନୁହେଁ ବରଂ ଶେଷର ଆରମ୍ଭ । ଏକଥା ମଣିଷର ଅଜ୍ଞାତ ସାରରେ ଘଟିଯାଏ । ତେଣୁ କାବ୍ୟନାୟକ କହେ ;—

"ସ୍ନେହର ରକ୍ତ ନୁହେଁ ଏତେ ଫିକା ଓ ଏତେ ତରଳ
ସେ ଟଳାଏ ସିଂହାସନ, ସେ ବଜାଏ ମୃତ୍ୟୁର ମହୁରୀ
ଭୂମିକମ୍ପ ପରେ ମଧ୍ୟ ଆଉ ଏକ ନୂଆମାଟି
ଚଉଆଡ଼େ ପଡ଼ଇ ବିଛୁଡ଼ି ଓ ତା' ଅଙ୍ଗେ ଅଙ୍ଗେ
ପୁରାତନ ମାଟିର ନିଃଶ୍ୱାସ, ପୁରାତନ ଜଳର ଭଉଁରୀ ।"

—"ଅପହରଣ"

ଅତଏବ 'ବୃତ୍ତ'ର କାବ୍ୟନାୟକ ପ୍ରେମ ଓ ସ୍ନେହର ସାର୍ବଜନୀନ ଅନୁଭୂତି ଲାଭ କରିଛି ଏବଂ ପରମ୍ପରାର ଅନୁବର୍ତ୍ତିନରେ ନୂତନ ଜଗତର ପରିକଳ୍ପନା କରିଛି । ଆଗେ ପ୍ରେମ, ପରେ ମୃତ୍ୟୁ ଏବଂ ମୃତ୍ୟୁର ଅନ୍ଧକାର କକ୍ଷରେ ପ୍ରେମର ଆଲୋକ ଅନୁଭବକରି ପ୍ରେମ ଓ ମୃତ୍ୟୁକୁ ଏକ ଏବଂ ଅଭିନ୍ନ କରିଦେଇଛି । ଭୂମିକମ୍ପ ପରେ ନୂତନ ସୃଷ୍ଟି ଓ ସେହି ପୁରାତନ ମାଟିର ନିଃଶ୍ୱାସରେ ନୂତନର ଜୀବନନ୍ୟାସ କରି ପରମ୍ପରାଧର୍ମୀ ଅଥଚ ନୂତନ ଜୀବନ ଜିଜ୍ଞାସାରେ ଏହି କାବ୍ୟନାୟକ ନିଜର ସ୍ୱତନ୍ତ୍ର ସରଣୀ ସୃଷ୍ଟି କରିଦେଇଛି ।

—୩—

ପ୍ରେମ, ଜୀବନ, ମୃତ୍ୟୁ, ସମୟ, ଯନ୍ତ୍ରଣା, ନିଃସଙ୍ଗତା ଓ ସନ୍ତୋପଣ ଊର୍ଦ୍ଧ୍ୱାୟିତ ଅଧ୍ୟାତ୍ମ ଅନୁଭୂତ 'ବୃତ୍ତ'ର କାବ୍ୟନାୟକର ମାର୍ମିକ ଅଭିବ୍ୟକ୍ତି । ଏହି କାବ୍ୟ ନାୟକ ଯନ୍ତ୍ରଣାକୁ ପାଥେୟ କରି ନୂତନ ମାଟିର ସନ୍ଧାନ କରିଛି—ମୃତ୍ୟୁଭିତର ଦେଇ ଅମୃତର ବାଣୀ ଶୁଣାଇଛି—ସମୟର ଅସୀମ ସତ୍ତାରେ ନିଜର ସତ୍ତାକୁ ମିଶାଇ ନୂତନ ଈଶ୍ୱର ଅପେକ୍ଷା ରଖିଛି—ପ୍ରେମର ଅନାହତ ବଂଶୀଧ୍ୱନିରେ ବିଭୋର ହୋଇ ଉଠିଛି । ସ୍ଥୂଳବାସ୍ତବତାରୁ ଏହା ଊର୍ଦ୍ଧ୍ୱଗ ବାସ୍ତବତାକୁ ଗତି କରିଛି । ଅତି ବାସ୍ତବବାଦୀ (Surrealist)ଙ୍କ ପରି ଏହା ପୂର୍ଣ୍ଣ ମଣିଷ (Integral man)କୁ ଅନୁଭବ କରିବାକୁ ଚେଷ୍ଟା କରିଛି । ସାଧାରଣ ସ୍ଥୂଳଜ୍ଞାନ, ଚେତନା ଓ ବାସ୍ତବତାରୁ ଅତିକ୍ରମଣ କରି ବିପୁଳ ଅବଚେତନ ଓ ଅଚେତନ ଜଗତର ରହସ୍ୟକୁ ଆବିଷ୍କାର କରିବାପାଇଁ ଏହା ପ୍ରେରଣା ଦେଇଛି । ଏହି ଅତିବାସ୍ତବବାଦୀ କାବ୍ୟ-ପୁରୁଷ ସମତଳ ଚେତନଶୀଳତା (Surface Consciousness)ରୁ ମୁକ୍ତ ହୋଇ

ଅବଚେତନର ଗଭୀରତମ ସତ୍ୟକୁ ଉଦ୍‌ଘାଟନ କରିବାକୁ ଉଦ୍ୟମ କରିଛୁ । ଏହି କାରଣରୁ ବେଳେ ବେଳେ ଏହି କାବ୍ୟ-ମାନସ ରହସ୍ୟଧର୍ମୀ ମନେ ହୋଇଥାଏ । ତେବେ ଏହି ରହସ୍ୟଧର୍ମିତା ଯୋଗପିଣ୍ଡିତ ତତ୍ତ୍ୱଗର୍ଭିତ ନୁହେଁ ବା ମୁକ୍ତିଅଭିଳାଷୀ ନୁହେଁ । ଏହି ଜଗତରେ ଏକ ନୂତନ ପୃଥିବୀ ସୃଷ୍ଟିପାଇଁ ଏ ମାନସ ପ୍ରେରଣା ଦେଇଛୁ । ଏହି ମାନସରେ ବେଳେ ବେଳେ ରୋମାଣ୍ଟିକ ଚନ୍ଦ୍ରନ ସୃଷ୍ଟି ହୋଇଥିବା ଲକ୍ଷ୍ୟ କରାଯାଏ । ତେବେ ଏହି ରୋମାଣ୍ଟିସିଜମ୍ କ୍ରମେ ମିଷ୍ଟିକ ହୋଇ ଅତିବାସ୍ତବ-ବାଦୀ ଭାବଧାରାରେ ଅନୁପ୍ରାଣିତ ହୋଇଅଛୁ । ଅତଏବ କବି ଦୀପକ ମିଶ୍ରଙ୍କର କାବ୍ୟ ଚେତନା ବାସ୍ତବତା – ରୋମାଣ୍ଟିସିଜମ୍—ମିଷ୍ଟିସିଜମ୍ ଦେଇ ସର୍‌ରିଅଲିଜମ୍ ମଧ୍ୟକୁ ଗତି କରିଥିବା ଲକ୍ଷ୍ୟ କରାଯାଏ । ଏହି ଭାବ ପ୍ରକାଶ କରିବାକୁ ଯାଇବେଳେ ସେ ତାଙ୍କର କବିତାର ସୃଷ୍ଟି ସମ୍ବନ୍ଧରେ ମତବ୍ୟକ୍ତ କରନ୍ତି......

"କାରଣ ମୁଁ ଜାଣେ ଏତିକି
ଯେ କବିତା ହୁଏନା ଗଢ଼ା
କୋଣାର୍କ ବା ତାଜମହଲ ପରି ।

ଆମର ହାତରେ
ଏହା ଫୁଟେ ତା' ଇଚ୍ଛାରେ
ନାମହୀନ ତାଜାଫୁଲ ପରି ।"

—'ଦୃଷ୍ଟାନ୍ତ'

ଏହି କବିତା ଫୁଲପରି ଫୁଟେ—ଯାହା ଜୀବନ୍ତ, ଯାହା ଜୀବନର ଗୋପନ-ଭାଷ୍ୟ । "କିନ୍ତୁ ଫୁଲର ଭାଷା କ'ଣ ବେତନଭୋଗୀ ମାଳି ବୁଝିପାରେ ।"—ଏ କଥା କହି କବି ସ୍ପଷ୍ଟ କରିଦେଇଛନ୍ତି ତାଙ୍କର କାବ୍ୟଚେତନା ସମ୍ବନ୍ଧରେ । ମାଳୀ ହୁଏତ ବଗିଚାରେ ଫୁଲଗଛର ଯତ୍ନ ନିଏ । ତେବେ ତାର ଯତ୍ନ ନେବା ବେତନ ଉପରେ ନିର୍ଭର କରେ । ଫୁଲର ନୀରବ ଭାଷାକୁ ବୁଝିବା ପାଇଁ ସେ ଅକ୍ଷମ । ସେହିପରି କବି ଦୀପକ ମିଶ୍ରଙ୍କ କବିତାର ଭାବକୁ ବୁଝିବା ସ୍ଥୂଳଦୃଷ୍ଟି ସମ୍ପନ୍ନ ପାଠକ ପକ୍ଷରେ ଅସମ୍ଭବ । କବି ମିଶ୍ର ପୁଣି ତାଙ୍କର କବିତାକୁ ପାରମ୍ପରିକ ଭାଷା ମାଧ୍ୟମରେ ପ୍ରକାଶ କରିନାହାନ୍ତି । ଏହି ଭାଷାର ଆଭିଧାନିକ ଅର୍ଥ ବାହାରିକରି କବିତାକୁ ବିଚାର କରିବାକୁ ଗଲେ କିନ୍ତୁ ସମସ୍ୟାରେ ନିରାଶ ହେବାକୁ ହୋଇଥାଏ । ଆଧୁନିକ କବିତା ଆଉ ଉକ୍ତିଗତର ବର୍ଣ୍ଣନାଧର୍ମୀ କବିତା ନୁହେଁ । ଏହା ଆଧୁନିକ ମଣିଷର ଅବଚେତନ ମନର କିଛି ସନ୍ଦର୍ଭର ଅଭିବ୍ୟକ୍ତି । ତେଣୁ କବି ଅବଚେତନର ଭାବକୁ ପ୍ରକାଶ କରିବାପାଇଁ ପ୍ରତୀକ ଓ ଚିତ୍ରକଳ୍ପମାନ ବ୍ୟବହାର କରିବାକୁ ବାଧ୍ୟ ହୋଇଥାଏ । କବି ଦୀପକ ମିଶ୍ର

ତାଙ୍କର ସମସ୍ତ କବିତାରେ ନୂତନ ନୂତନ ପ୍ରତୀକ ଓ ଚିତ୍ରକଳ୍ପମାନ ବ୍ୟବହାର କରିଥାନ୍ତି । ଚିତ୍ରକଳ୍ପ ପ୍ରୟୋଗ କରିବାରେ ସେ ମୌଳିକ ଏବଂ ତାଙ୍କର ଚିତ୍ରକଳ୍ପଗୁଡ଼ିକ ଅତ୍ୟନ୍ତ ଭାବଗର୍ଭକ । ଏହି ସଂକଳନରୁ କେତୋଟି ଦୃଷ୍ଟାନ୍ତ ଏଠାରେ ପ୍ରଦାନ କରାଗଲା—

× × × ଅଥଚ ପବନ ଚାଲେ କି
ତୀବ୍ରଗତିରେ କଅଁଳା ଅଣ୍ଟିରା ବାଛୁରୀ ପରି
ସେ ଖାଲି ଭଲ ପାଏ ଶୋଇବାକୁ ଅରମାଜାଗାରେ ।

—'ଈଶ୍ୱର'—

ସେଦିନ ଯେତେବେଳେ ସାଧାରଣ
ଭାବେ ସଞ୍ଜ ଚାଲି ଆସୁଥିଲା ପାଦେ ପାଦେ
ନୂଆଚାଲି ଶିଖୁଥିବା ବନ୍ଧୁଙ୍କ ଦମ୍ପତିଙ୍କ ଝିଅପରି

—ଈଶ୍ୱର—

ଏବଂ ଓଦାବାଲିରେ ଖସି ଶୋଇପାରେ
ପ୍ରଥମ ପ୍ରସୂତିପରି, ତାହାର ହାତ ଛୁଇଁ ପାରେ
ତାଲଗଛ; ତା ମୁହଁରେ କେତେ ହସ
ମିଳାଇ ବି ପାରେ ସ୍ତବ୍ଧ ମଧ୍ୟାହ୍ନର ଔତ୍ସୁକ ଡାକରେ ।

—'ମଧ୍ୟାହ୍ନରେ'—

"ଯାହାରେ ନୂଆ ଜୋକାପାର୍ଟ କରୁଥିବା
ଅଶିକ୍ଷିତ-ଭେଣ୍ଡାର ଗୌଣ-ସାଧୁବାକ୍ୟ
ଏଇ ସବୁହିଁ, ତେବେ ସକାଳରେ
ପଦନ୍ତୁ ଅତିଥି ପରି ଶୀତ ଫେରିଆସେ
ଶୀତଳତାର ପତଳା ଚାଦର ଚିରି ।"

—ନାମକରଣ—

ଏହିପରି ଚିତ୍ରକଳ୍ପ ସମ୍ବନ୍ଧରେ ବହୁ ଚମତ୍କାର ଦୃଷ୍ଟାନ୍ତ ଏହି ସଂକଳନରୁ ପ୍ରଦାନ କରାଯାଇପାରେ । ଏଗୁଡ଼ିକର ପ୍ରୟୋଗରେ କବିଙ୍କର ଆନ୍ତରିକତା ଓ ଗଭୀର ଅନୁଭୂତିର ପରିଚୟ ମିଳିଥାଏ । ପ୍ରତୀକ ଓ ଚିତ୍ରକଳ୍ପ ବ୍ୟତୀତ କବି

ଦୀପକ ମିଶ୍ର ଏହି ସଂକଳନରେ ବହୁ ମିଥ୍‌ର ବ୍ୟବହାର କରିଅଛନ୍ତି । ବୋଧହୁଏ ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଯେଉଁ କେତେଜଣ ମୁଷ୍ଟିମେୟ କବି ମିଥ୍ ସାହାଯ୍ୟରେ ଆଧୁନିକ ଜୀବନ ଯନ୍ତ୍ରଣା ଓ ନୂତନ ମୂଲ୍ୟବୋଧକୁ ପ୍ରକାଶ କରୁଅଛନ୍ତି ସେମାନଙ୍କ ମଧ୍ୟରେ କବି ଦୀପକ ମିଶ୍ର ଅନ୍ୟତମ । ମିଥ୍ ବ୍ୟବହାର କରିବାରେ କବି ସୀତାକାନ୍ତ ମହାପାତ୍ର ପ୍ରଧାନ । ତଥାପି ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ, ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ ଓ ସୌଭାଗ୍ୟ ମିଶ୍ର ପ୍ରଭୃତି ମିଥ୍ ବ୍ୟବହାର କରି ଆଧୁନିକ ସମସ୍ୟଚେତନା ଓ ଜୀବନ ଜିଜ୍ଞାସାକୁ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ପ୍ରକାଶ କରୁଅଛନ୍ତି । ବହୁ ସମୟରେ ମନେହୁଏ ସେହିସବୁ ମିଥ୍ କବିତାର ମୂଳସ୍ୱରଠାରୁ ଯେତେ ଯେପରି ଅଲଗା ରହିଯାଇଛନ୍ତି କିନ୍ତୁ । ଦୀପକ ମିଶ୍ରଙ୍କ କବିତାରେ ଯେଉଁସବୁ ମିଥ୍ ବ୍ୟବହୃତ ହୋଇଛି ସେଗୁଡ଼ିକ କବିତାର ଆତ୍ମାସହିତ ଘନିଷ୍ଠଭାବରେ ମିଶିଯାଇଛି । ତେଣୁ ସୁଶେନ୍ ଲିଙ୍ଗରଙ୍କର "Myth is the only poetry"— ଅଭିମତଟି ଦୀପକ ମିଶ୍ରଙ୍କ କବିତାପ୍ରତି ଏକାନ୍ତ ଭାବରେ ପ୍ରଯୁଜ୍ୟ । 'ଅସମାପିକା'ଠାରୁ ଆରମ୍ଭ କରି 'ବୃତ୍ତ' ପର୍ଯ୍ୟନ୍ତ ପ୍ରାୟ ସମସ୍ତ କବିତାରେ ସେ ମିଥ୍‌କୁ ବ୍ୟବହାର କରି କାବ୍ୟ-ଚମତ୍କାରିତା ସୃଷ୍ଟି କରିଅଛନ୍ତି । 'ବୃତ୍ତ' କବିତା ସଂକଳନର 'ବିଗ୍ରହ' କବିତାରେ ଜୈତବନର ତରୁଣ ସନ୍ନ୍ୟାସୀ ବୁଦ୍ଧଦେବ, ମହାଭାରତର ବନ ପର୍ବସ୍ଥ ନଳ ଦମୟନ୍ତୀ ଉପାଖ୍ୟାନରେ କର୍କୋଟକ ନାଗରୂପ ଧାରଣ କରିଥିବା ଶନି, 'ପରିଶିଷ୍ଟ' କବିତାରେ ନିର୍ଦ୍ଦୋଷ ହଂସକୁ ଶରାଘାତ କରିଥିବା ଦେବଦତ୍ତ, 'ଲୋଡ଼ାନାହିଁ' କବିତାରେ ଜଗନ୍ନାଥଙ୍କ ବ୍ରହ୍ମକୁ କଳାପାହାଡ଼ କବଳରୁ ରକ୍ଷା କରିଥିବା ବିଶର ମହାନ୍ତି, "ଆକାଶର ନୂତନ ଓ୍ୟାରିଜା" କବିତାରେ ଉପଗୁପ୍ତ ଓ ଅବଧୂତ, 'କାୟା ପ୍ରବେଶ' କବିତାରେ ବସୁଦେବ, ଉଗ୍ରସେନ, ଦେବକୀ କଂସ କାରାକକ୍ଷ ଓ ଶ୍ରୀକୃଷ୍ଣ 'ବନବାସ' କବିତାରେ ରାବଣ ଓ ଲକ୍ଷ୍ମଣ ପ୍ରଭୃତି ପୌରାଣିକ ଓ ଐତିହାସିକ ଚରିତ୍ରକୁ କବି ମିଶ୍ର ଆଧୁନିକ ଜୀବନ ଜିଜ୍ଞାସା ସହିତ ମିଶାଇ ନୂତନ ଭାବରେ ପ୍ରକାଶ କରିଅଛନ୍ତି । ଏହି କାରଣରୁ ତାଙ୍କର କବିତାଗୁଡ଼ିକ ପାଠକ ପ୍ରାଣକୁ ସ୍ପର୍ଶ କରିଥାଏ ଏବଂ ପାଠକ ସାମ୍ପ୍ରତିକ ଜୀବନ ଯନ୍ତ୍ରଣା ଓ ନିଃସଙ୍ଗତା ସହିତ ଏ ଦେଶର ଅତୀତ ଐତିହ୍ୟକୁ ମିଳାଇ ଦେଖିବାର ସୁଯୋଗ ଲାଭକରେ । ଯେଉଁ ମଣିଷ ଜଗନ୍ନାଥଙ୍କୁ ଜଳନ୍ତା ଅଗ୍ନିରୁ ଉଦ୍ଧାର କଲା ସେହି ମଣିଷ ଜଗନ୍ନାଥଙ୍କୁ ପୁଣି ହାତ ଯୋଡ଼ି ପ୍ରାର୍ଥନା କଲା । ଏହି ବୈଚିତ୍ର୍ୟକୁ କବି ରୂପ ଦେଇଛନ୍ତି ଏହିପରି—

"ରତ୍ନ ସିଂହାସନ ପରେ ବସେ ଆଜି
ଦାରୁବ୍ରହ୍ମ ଅନ୍ତର୍ହିତ ମଣିପଦ୍ମ ନାଭି କମଳରେ

ଓ ବଣର ମହାନ୍ତ ଠିଆ ହକାର ଲୋକଙ୍କ
ପରି ହାତଯୋଡ଼ି ପାହାଚ ଉପରେ ।"

—ଲୋଡାନାଇଁ

ଏହି ମିଥ୍ ମାଧ୍ୟମରେ କବି ସାମ୍ପ୍ରତିକ ମଣିଷର ଅସହାୟତାକୁ ପ୍ରକାଶ କରିଅଛନ୍ତି । ସେ ପୁଣି 'କାୟା-ପ୍ରବେଶ' କବିତାରେ ଭାଗବତର ମିଥ୍‌କୁ ବ୍ୟବହାର କରି ସାଂପ୍ରତିକ ଜୀବନର ଚିତ୍ରକୁ ପ୍ରକାଶ କରିଅଛନ୍ତି । ଏହି କବିତା ଏକ ସାମଗ୍ରିକ ମିଥ୍ । କଂସର କାରାକକ୍ଷରେ ଦେବକୀ ଗର୍ଭରୁ ଜନ୍ମନେଲେ ଭଗବାନ ଶ୍ରୀକୃଷ୍ଣ । ବସୁଦେବ ତାଙ୍କୁ ମଥାରେ ଧରି ଯମୁନା ପାରହୋଇ ଗୋପ ପୁରରେ ଛାଡ଼ିଦେଇ ଆସିଲେ । ଏହି ମିଥ୍‌କୁ କବି ମିଶ୍ର ଅତ୍ୟନ୍ତ ଚମତ୍କାର ଭାବରେ ଆଲୋଚ୍ୟ କବିତାରେ ପ୍ରକାଶ କରିଅଛନ୍ତି । ସାଂପ୍ରତିକ ଜୀବନ ଯନ୍ତ୍ରଣାକୁ ଏହି କବିତାରେ ଉକ୍ତ ମିଥ୍ ମାଧ୍ୟମରେ ପ୍ରକାଶ କରାଯାଇଛି । ଅତଏବ କବି ଦୀପକ ମିଶ୍ରଙ୍କର ପ୍ରାୟ ସମସ୍ତ କବିତାରେ ମିଥର ବ୍ୟବହାର ହୋଇଥିବା ଲକ୍ଷ୍ୟ କରାଯାଏ । ଏହି ମିଥ୍ କେଉଁ କବିତାରେ ପୂର୍ଣ୍ଣାଙ୍ଗ ରୂପେ ଏବଂ କେଉଁ କବିତାରେ ଖଣ୍ଡାଂଶ ରୂପେ ବ୍ୟବହୃତ ହୋଇଛି । ତଥାପି ଭାବ ସଂପ୍ରସାରଣରେ ଏହା ସାହାଯ୍ୟ କରିବା ସଙ୍ଗେ ସଙ୍ଗେ କାବ୍ୟ-ସୌନ୍ଦର୍ଯ୍ୟ ସୃଷ୍ଟି କରିବାରେ ଏହା ସାହାଯ୍ୟ କରିଥାଏ । ଫ୍ରଏଡୀୟ ତତ୍ତ୍ୱକୁ ନେଇ କବି ଯେପରି 'ସାପଖେଳ' କବିତା ରଚନା କରିଅଛନ୍ତି ସେହିପରି ସେ ତନ୍ତ୍ର ଦର୍ଶନକୁ ନେଇ "ବୃଷ୍ଣାନ୍ତ" କବିତା ମଧ୍ୟ ରଚନା କରିଅଛନ୍ତି । ପ୍ରତ୍ୟେକ କବିତା ସ୍ୱକୀୟ ମହିମାରେ ମହିମାନ୍ୱିତ । କୌଣସି କବିତା ଭାବ ସଂପ୍ରସାରଣରେ ବା ଭାବ ବିନ୍ୟାସରେ ବାଧାସୃଷ୍ଟି କରେ ନାହିଁ । ପ୍ରତ୍ୟେକ କବିତାରେ ଅଛି ଦୀପ୍ତି । ନୂତନ ନୂତନ ଚିତ୍ର-କଳ୍ପ ସଂଯୋଜନା ଓ ପ୍ରତୀକର ବ୍ୟବହାର ସଙ୍ଗେ ସଙ୍ଗେ ମିଥ୍‌ର ଯଥାର୍ଥ ପ୍ରୟୋଗ ଏହି କବିତା ସଂକଳନର ପ୍ରତ୍ୟେକ କବିତାକୁ କାଳଜୟୀ କଳାମୂଲ୍ୟ ପ୍ରଦାନ କରିଛି । ଭାଷା ବ୍ୟବହାରରେ କବି ସଂଯତ ଓ ମିତଭାଷୀ, ଅଥଚ ତାଙ୍କର କାବ୍ୟ-ଭାଷା ଭାବଗର୍ଭକ । ପୂର୍ବ କବିତାମାନଙ୍କରେ ଯେପରି ସେ ବେଳେବେଳେ ଗଦ୍ୟାତ୍ମକ ହୋଇପଡ଼ୁଥିଲେ 'ବୃତ୍ତି' କବିତା ସଂକଳନରେ ଅନ୍ତତଃ ସେଥିରୁ ମୁକ୍ତ ରହି କବିତାର ବିବିକ୍ତତା ସୃଷ୍ଟି କରିଅଛନ୍ତି । ବହୁ ଶାସ୍ତ୍ର ଓ ଗ୍ରନ୍ଥ ଅଧ୍ୟୟନ କରି, କ୍ଷତବିକ୍ଷତ ଜୀବନ ସମ୍ବନ୍ଧରେ ବିପୁଳ ଅନୁଭୂତି ଲାଭ କରି ସେ କବିତା ସୃଷ୍ଟି କରିଚାଲିଛନ୍ତି । ବେଦ, ବେଦାନ୍ତ, ମହାଭାରତ, ଚଣ୍ଡୀପୁରାଣ, ଗୀତା, ଭାଗବତ ଓ ବିଭିନ୍ନ ତନ୍ତ୍ର ଶାସ୍ତ୍ର ଆଦି ଗ୍ରନ୍ଥଗୁଡ଼ିକର ଆର୍ମିକ ଭାବ ସତେ ଯେପରି ତାଙ୍କର ସମସ୍ତ କବିତାରେ ବିଚ୍ଛୁରିତ ହୋଇ ପଡ଼ିଛି । ତାଙ୍କ କବିତାର ବିଗ୍ରହକ ମହାକାଳ । ନିଶ୍ଚିତ ଭାବରେ ଏହି କାଳ ବକ୍ଷରେ ତାଙ୍କର କବିତା କାଳାତୀତ ହୋଇ ଉଜ୍ଜଳ ହେବ । ଏହି କାରଣରୁ ସେ କହନ୍ତି—

॥ ୦ ॥ ବୃତ୍ତି

"ତେଣୁ ମୁ ତ ଧନ୍ୱନ୍ତରୀ
ଆସିଛୁ ଉତ୍ତରି
କେତେ ଯେ ସମୁଦ୍ର ମନ୍ଥନ କରି
ମୋ ଦୁଇ ହାତରେ ଦେଖ ଜଳଜଳ ନିର୍ମସ୍ତୁ ଅମୃତରପାତ୍ର ।"

ଏହାହିଁ କବି ଦୀପକ ମିଶ୍ରଙ୍କର କାବ୍ୟପୁରୁଷର କାବ୍ୟ ଜିଜ୍ଞାସା ଓ କାବ୍ୟ-ଚେତନାର ସର୍ବଶେଷ ଅଭିବ୍ୟକ୍ତି । ଅମୃତ ଆଶାର୍ଥୀ କବି ମିଶ୍ରଙ୍କର କାବ୍ୟପୁରୁଷ ତଥାପି ସୃଷ୍ଟି କରିଚାଲିଛି ନୂତନ ନୂତନ କବିତା । ଏହି ସୃଷ୍ଟିର ବିରାମ ନାହିଁ । ସେହି ଅପ୍ରତିହତ ସୃଷ୍ଟି ପ୍ରକ୍ରିୟାରେ, 'ବୃତ୍ତ' ଅଷ୍ଟମ ଦଶକର ମଧ୍ୟବର୍ତ୍ତୀ ବିନ୍ଦୁରେ ବାସ୍ତବିକ ଏକ କ୍ରାନ୍ତି ସୃଷ୍ଟି କରିଛି—ଏ ବିଶ୍ୱାସ ମୋର ଅଛି ।

ଦୀପକ ବାବୁ ଏହି କବିତା ସଂକଳନର ସେତୁ ରଚନା କରିବାକୁ ମୋତେ କାହିଁକି କହିଲେ ମୁଁ ଜାଣେନା । ଏହି କବିତାଗୁଡ଼ିକ କବି ଆଉ ପାଠକ ମଧ୍ୟରେ ଆପେ ଆପେ ସଂଯୋଗ ସେତୁ ସ୍ଥାପନ କରିବାକୁ ସଂପୂର୍ଣ୍ଣ କ୍ଷମ । ତଥାପି ବନ୍ଧୁଙ୍କର ଅନୁରୋଧରେ ଏହି ଉପକ୍ରମଣିକା । ଏହାଦ୍ୱାରା ଯଦି ପାଠକ ଓ ଏହି କବିତା ସଂକଳନର କବିତାଗୁଡ଼ିକ ମଧ୍ୟରେ କିଛିଟା ସଂଯୋଗ ସ୍ଥାପନ କରିବାକୁ ଏ ଉପକ୍ରମଣିକା ସାହାଯ୍ୟ କରେ ତେବେ ମୋର ଶ୍ରମ ସାର୍ଥକ ହେଲା ବୋଲି ମଣିବି ।

ଅଧ୍ୟାପକ ବୈଷ୍ଣବଚରଣ ସାମଲ
ରେଭେନ୍ସା କଲେଜ
କଟକ—୩

# ଅପଭ୍ରଂଶ



ସମୟ ପଚିବ ଦିନେ
ବୟସ ଓ ଯିବ
ଯେତେ ସୁସ୍ୱାଦୁ ଫଳ ମଧ୍ୟ ଦିନେ ହେଲେ
ପଚି ସଢ଼ି ଲୋପ ପାଇଯିବ ସେଇ ସମୟର
ଅନ୍ୟ କୁହାଟରେ । ଏତକ ବୁଝିବା ପାଇଁ
ତୁମେ ତ ପ୍ରସ୍ତୁତ ନୁହଁ—; ନିଆଁ କେବେ
ଭାବେ ନାଇଁ ଯେ ସେ ମଧ୍ୟ ମଉଳିଯିବ
ସମୟ ଛାଡିରେ ଓ ତାହାର ସ୍ୱାସ୍ଥ୍ୟ ସବଳତା
ସମସ୍ତ ଘୋଡାଇ ହୋଇ ରହିଯିବ ପାଉଁଶ ହାଡ଼ରେ ।।

ମୋର ଲୁହରେ ତୁମେ ଆଜି ସ୍ଥଳପଦ୍ମ
ଲୋକଙ୍କ ପାଖରେ ଫାଟିପଡ଼ ଗର୍ବରେ
ଉଛୁଳି ଓ ମୋ ଲୁହ ପାଲଟିଯାଏ ଝାଳ
ଖାଲି—; ମନର ଦୁର୍ବଳତା ଯାହା ଫୁଟିପଡ଼େ
ତୁମ ଅହଂକାରୀ କପାଳର ଅମାପ ମାଟିରେ ।

ଆଗେ ତ ପୋଡ଼ିବ ଯେତେ ଦେହର ଦାମିକା ଅଂଶ
ନିଆଁ ମଧ୍ୟ ସୌଂଦର୍ଯ୍ୟକୁ ଭଲପାଏ ଓ ତା'ର ଉଷ୍ମମ ଚୁମ୍ବନ
ସବା ଆଗେ ଶୋଷିନିଏ ବାଛି ବାଛି ନଂଦନ କାନନ ଓ
କେଉଁ ଅପରିଚିତ ମୁର୍ହ୍ତରେ ପରିଣତ ହେବ ତୁମ ବୀଭତ୍ସ କଂକାଳ ।।

ପୃଥିବୀରେ ଏ ଯାବତ୍ ଯେତେ ପ୍ରେମ ହୋଇଛି ସଂଭବ
ଏବଂ ଯାହା ସଂଗଠିତ ହେବା ପାଇଁ ଅପେକ୍ଷା କରିଛି
ସମସ୍ତେ ଭୋଗିବେ ଏଇ ଏକ ଦଶା ନିଜକୁ ହିଁ କେନ୍ଦ୍ର କରି

ନିଜ ବୃତ୍ତର ରେଖାରେ । ଏ ମାଟି ପାଇବ ସିନା
କିଛି ବିଚିତ୍ର ଲୁହର ସ୍ୱାଦ ଓ ଏ ନଭମଂଡଳ
ଧୋଇହେବ ନାନା ନିଃଶ୍ୱାସରେ । ଦେଉଳରେ
ଦିଆଯିବ ନୂତନ ଚୂନର ବେଢ଼ଣ । ତୁମେ
ବ୍ୟବହାର କରୁଥିବା ଏବେକାର ଶାଢ଼ୀ ଆଉ ଅନ୍ୟାନ୍ୟ
ପୋଷାକ ପିଂଧି ଗଳିକଂଦି ବୁଲୁଥିବେ ଆହୁରି
ଅନେକ ଝିଅ ବୟସର ବାସ୍ନାରେ ଚୌଦିଗ ଭୁଲାଇ ।।

ତୁମେ ସେତେବେଳେ ପିଂଧିଥିବ ଧଳାଶାଢ଼ୀ ଓ କୁଶାସନ
ସାମ୍ନାରେ ପୋଡ଼ୁଥିବ ଧୂପକାଠି ଯାହାର ସୁଗଂଧ ଧୂଆଁରେ
ହସି ହସି ଫୁଲୁଥିବେ ଭାଗବତ ବହିର ଅକ୍ଷର ଓ ତୁମ
ଅତୀତର ଅହଂକାର ଲୋଟୁଥିବ ଅପରାଧୀ ବିକଳ ମନରେ ।

ଦମକା ପବନ ପରି ତୁମ ଶେଷ ଓଠ ପାହାଚରୁ
ଓହ୍ଲାଇବ କେଇପଦ ଉପଦେଶାମୃତ—;
'ପ୍ରାଣୀର ଭଲ ମନ୍ଦ ବାଣୀ
ମରଣ କାଳେ ତାହା ଜାଣି ।'

ଏବଂ ତୁମ ଖଇର ରଂଗର ରୁଦ୍ରାକ୍ଷ ମାଳ
ମଲାସାପ ପରି ଶୋଇଥିବ ସ୍ତିମିତ ଛାତି ଆଲମାଳେ ।

ଅନୁତାପ ଏକ ସମୟ ସାପେକ୍ଷ କଥା
ଯାହା ପ୍ରାୟ ଦେଖାଦିଏ ଆପଣା ମର୍ଜିରେ
ଅନନ୍ତସ୍ତ ଲୋକର ଝୋଙ୍କରେ ଯଦିଚ ତାହା ଦେଖିବାକୁ
ବଂଚି ରହି ନ ପାରେ ବି ଅପର ନିର୍ଦ୍ଦୋଷ ମଣିଷ ।

କିଏ ଅବା କୋଳି ଖାଇ କୋଳି ମଂଜି ପୋତିଛି ଏଠାରେ ।।

ତେଣୁ ତୁମ ସୁଠୋଳ ଗୋଇଠି ସମେତ ପାଦର ଗର୍ବିତ ଚାପରେ
ଆଜି ଯେଉଁ ଧୂଳି ହୁଏ ଅବଶ ଓ ବୈଧବ୍ୟ କାତର
ତେଣୁ ତମ ସୁଗୋଲ ବାହୁ ସମେତ ବେତକୋଳି ନଖାଗ୍ରରେ
ଆଜି ଯେଉଁ ବାୟୁ ହୁଏ ରକ୍ତବର୍ଣ୍ଣ ଓ କ୍ଷତାଂଶ ବିବର;
ସେଇ ଦିନେ ଟାଣିନେବେ ତୁମ ତ୍ରିକାଳର
କୃତ୍ରିମ ଧାତସର ମନ,
କେଉଁ ରାଧା ପରିପୂର୍ଣ୍ଣ ଯଦି ନାହିଁ
ଯମୁନା ଓ କାଳିଂଦୀ ବିଜନ,
ଯଦି ନାହିଁ ଯଂତ୍ରଣାରେ ଧିକି ଧିକି

ଜଳିଯିବା ବଇଁଶୀର ଶୂନ୍ୟ ନିବେଦନ,
ଯଦି ନାହିଁ ବିନିମୟ ନିଶାର ନିକ୍ୱଣ—;
ତେବେ କେଉଁ ସୁନାର ପ୍ରତିମା ସୀତା
ଅବସାନ ଘଟାଇ ପାରେ ଶ୍ରୀରାମଂକ ଆଂତରିକ ଦୁଃଖର ଚେତନା ।

ତେଣୁ ଅନୁତାପ ଦୋଷକୁ ଭୁଲାଇବା ପରିବର୍ତ୍ତେ
ଆହୁରି ବିମୂର୍ତ୍ତ କରେ ତାହାର ସ୍ମୃତିକୁ ଓ ନିଜର
ଆଖପାଖ ଜଂଜାଳରେ କେବଳ ଘନିଷ୍ଠ ହୁଏ
ବୈଶାଖର ମେଘ ଭଳି ହତାଶାର ଅଗ୍ନି-ପ୍ରକୋଷ୍ଠରେ;
ଏବଂ ପୁରୁଣା ପୋଷାକ ସବୁ ଭୀଷଣ ହୀନସ୍ଥା କରେ
ବୟସର ଅଫିମରେ କଳା ପଡ଼ି ଯାଇଥିବା ତଉଲ ରୂପକୁ ।

ଅନୁତାପ ଏକ ବିଶେଷ ଧରଣର ବିଷଦାଂତ
ଲାଗିଥିବା ପୋଷା-ସାପ ଯେ ମାରେ ନୃଶଂସ ଚୋଟ
ଗୀତ ବୋଲୁଥିବା ଲୋକ ମଝିବାଟରେ
ହଠାତ୍ ରେକିଗଲେ କିଂବା ଗୀତର ପ୍ରକୃତ ଭୟ
ତା' ତଂଟିକୁ ଚିପି ଦେଲେ ପ୍ରକୃତିସ୍ଥ ଅବସ୍ଥାରେ ।

ସାପର ଚୋଟରେ ଦେହ ଯିନା ନୀଳ ହୁଏ
କିଂତୁ ଅନୁତାପ ନୀଳ କରେ ମନର ରକ୍ତକୁ ଓ
ରକ୍ତର ସତ୍ୟକୁ କିଏ ଅସ୍ୱୀକାର କରିଅଛି
ରଜା ଅବା ପ୍ରଜା ହେଉ ସିଏ ।

ଗୋଟିଏ ସମୟ ଯିବ ଉଡ଼ି କୁଂଡ଼ା ପରି
ଅନ୍ୟ ସମୟର କୁଲା-ପାଛୁଡ଼ାରେ ଏବଂ
ପ୍ରେମର ଗଂଧ ନେଇ ଦୌଡ଼ିବ ଦୁର୍ବାର ବତାସ
ପଥର ତଳେ ଶୋଇଥିବା ମଣିଷ ପାଖକୁ—;
କହିବ ଉଠ ବୈଦେହୀ ରତି ପାହିଲାଣି ।
ରତିର ଅନୁତାପ ଦେଖ ଝରିପଡ଼େ ସକାଳର ଗେରୁଆ ଲୁଗାରେ ।।

ତା ୮-୧୨-୭୩



।। ତିନି ।। ବୃତ୍ତ

# ବିଚାର



'Iago :—

> Though in the trade of war I have slain men, yet do I hold it very stuff o' th' conscience to do no contrived murder. x x x"
>
> Othello—Scene II—Act—1.

ମାନୁଚି
ମାଗିଥିଲି ଦିନେ ତୁମ ଲୁବ୍ଧ
ଜ୍ୟୋଷ୍ଠର ପାପୁଲିରେ ଗ୍ରୀଷ୍ମର ରକ୍ତିମ କ୍ରୋଧ
କିପରି ଉଶ୍ୱାସ ହୁଏ ଆଷାଢ଼ର ବିଗଳିତ ନିଶାର
ସ୍ନେହରେ ; ଯାହାକୁ ଅନ୍ୟାନ୍ୟ ଲୋକ ମେଘ ବୋଲି କରଂତି ଚିହ୍ନଟ ।

ମାନୁଚି

ମାଗିଥିଲି ଦିନେ ତୁମ ହସ
ରହି ରହି ଆସୁଥିବା ଓ ଉପରେ ଉପରେ
ଉଡ଼ି ଯାଉଥିବା ପବନ ଯେପରି ଛୁଏଁ ନାଇଁ
ଆମର ଦେହକୁ ଅଥଚ ପବନ ଚାଲେ କି
ତୀବ୍ର ଗତିରେ କଅଁଳା ଅଂତିଓ ବାଛୁରୀ ପରି
ସେ ଖାଲି ଭଲପାଏ ଶୋଇବାକୁ ଅରମା ଜାଗାରେ ।।

ସେ ଦିନ ଯେତେବେଳେ ସାଧାରଣ
ଭାବେ ସଂଜ ଚାଲି ଆସୁଥିଲା ପାଦେ ପାଦେ
ନୂଆ ଚାଲି ଶିଖୁଥିବା ବୟସ୍କ ଦଂପତିଂକ ଝିଅ ପରି ;

ତୁମର କରୁଣ ପ୍ରଶ୍ନ ପଡୋଶୀଙ୍କ ବଗିଚାରେ ଫୁଲପ୍ରତି
ଫୁଲ ଜଗାଳୀର ବାତ୍ସଲ୍ୟ ମମତା ଦେଖି— ; କ'ଣ ଫୁଲ
ଆଉ ଫୁଟିବନି ଆମ ଅଗଣାରେ, ଖଂଡେଦୂର ପାହାଡ଼
ଗହ୍ୱରେ ସଂଜ ଦେଖା ଦେଲେ । କିଏ ମନା କଲା
ଯେ ଫୁଲ ଆଉ ଫୁଟିବନି ଜ୍ୟେଷ୍ଠର ଝାଂଜିରେ
ଆମ ଧୂସର ମାଟିରେ କିଂବା ଅଂଧକାର ଘୋଟିଗଲେ ପୂର୍ଣ୍ଣମୀ ତିଥିରେ ।

ଅଂଧାରର ଏକ ଭିନ୍ନ ଶୀତଳତା ଅଛି ଯାହାର
ଅଲିଖିତ ଭାଷା ବୁଝେ ଫୁଲ ତା'ର ନିଜସ୍ୱ ଶ୍ୱାସ-ପ୍ରଶ୍ୱାସରେ
କିଂତୁ ଫୁଲର ଭାଷା କ'ଣ ବେତନଭୋଗୀ ମାଳି ବୁଝିପାରେ ।।

ବିବେକ ନିର୍ମମ ନୁହେଁ କାରଣ ସେ ମଧ୍ୟ ମନା କରେ
ନୃଶଂସ ବ୍ୟକ୍ତିକୁ ଆଉ ରକ୍ତପାତ ନୁହେଁ ଯୁଦ୍ଧ
ଅବା ପ୍ରେମ ପାଇଁ ହେଉ । ସେ ମଧ୍ୟ ଖେଳାଏ ହସ
ତା' କୁଟିଳ ଚକ୍ରାଂତ ଓଠରେ ଓ ବେଶ୍ ନରମ ଗଳାରେ
ଡାକିପାରେ ସମୁଦ୍ରର ଦୁଇକୂଳ ଛୁଇଁ—;
କି ଅପୂର୍ବ ପ୍ରେମ ଦେଲ ହେ ବିଧାତା ଦୁହିଁଙ୍କ ଆଖିରେ
ଯାହା ପାଇଁ ଅକ୍ଳେଶରେ ଯେ କେହି ନିଜକୁ ରଜା ଅବା
ଫକୀରରେ ପରିଣତ କରି ଦେଇପାରେ । ତୁଚ୍ଛ ଏତ
ଅସ୍ତ୍ରର ନିଶାଣ ଏବଂ ଯେତେ ଷଡ଼ଯଂତ୍ର
ପୁରୁଷ ମନର ଭ୍ରମେ ଯେପରି ଜାଣିଥିଲ
ଡେସ୍‌ଡିମୋନା-କ୍ଳିଓପାଟ୍ରାଦଳ ; ଠିକ୍ ସେପରି
ପୂର୍ବ ଆକାଶ ଜଳେ କେତେ ଚିତ୍ରାଂଗଦା, ଦ୍ରୌପଦୀ
ଓ ଦମୟଂତୀର ଦୁଃଖ-ନିଃଶ୍ୱାସରେ ଏ ସମସ୍ତ
ମୋହ, ଏବଂ ଗୋଟେ ମୋହ ଭଂଗ ପରେ ଆଉ ଏକ
ମୋହରେ ମିଶିବା ଯାଏଁ ଅନ୍ତଃବର୍ତ୍ତୀ ସମୟରେ
ପୁରୁଷ ଓ ନାରୀ ଦୁହେଁ ବୁଲଂତି କେବଳ କିଏ ବା
ସଂବଳ କରେ ପୂର୍ବ ମୋହର ଆହ୍ଲାଦ—; ଅନ୍ୟ କିଏ
ଜଳେ ଖାଲି ଅବସାଦ ପରିପୂର୍ଣ୍ଣ ବିଦୀର୍ଣ୍ଣ ହୃଦୟ
ନେଇ କୋଳାହଳ ଜଗତ ମଧ୍ୟରେ ।।

କିଏ ନ ଜାଣେ କହ ସ୍ନେହ ନିମ୍ନମୁଖୀ
କୋମଳ ପାଣିର ପ୍ରତ୍ୟଂଗ ପରି ସେ ଓଦା କରେ
ଜାଣି ଜାଣି ବିମର୍ଷ ମନକୁ ; ଅଥଚ ଦେଖ
ସେ କେଡ଼େ ନିଃସହାୟ ନିଜେ—; ନହେଲେ

ଜେତ ବନର ସେଇ ତରୁଣ ସନ୍ୟାସୀ କିଆଁ ହାତେ ଧରି
ଭିକ୍ଷା ପାତ୍ର ଚାଉଳ ମୁଠାଏ ପାଇଁ ଛଳନାରେ ବୁଲିଥାଂତା
ଶ୍ରାବସ୍ତୀର ରାଜପଥେ ଅସ୍ତଗାମୀ ସୂର୍ଯ୍ୟର ମୁହଁରେ
ଦେଖି ନିଜର ପ୍ରତିଜ୍ଞା— ; ସେ କିଆଁ ଛୁଇଁଥାଂତା
ପ୍ରତ୍ୟେକ ଘରର କବାଟ ଯାହା ବଂଦ ହୋଇ ରହିଅଛି
ସନାତନ ଖରାର ଦୁଃଖରେ । ଏହାହିଁ ଅବ୍ୟକ୍ତ ଗତି
ଭଲ ପାଇବାର ଯେଉଁଠି ଜଣକର ପ୍ରତିଅଂଗ
କାଂଦି ଉଠେ ଅପରର ପ୍ରତିଅଂଗ ପାଇଁ ଏବଂ
ଚିଂତାରେ ଯାହାର ପିତାଂବର ପାଲଟିଯାଏ
ନୀଳବସ୍ତ୍ର ମାଲିକଂକ ମହିମାକୁ ଖାତିର ନ କରି ।

ସେ କେଉଁ ପୁରାଣ କାଳରେ ଦେବତା ବି
* କର୍କୋଟକ ନାଗ ରୂପ କରିଲେ ଧାରଣ
ରମଣୀର ପ୍ରେମ ପାଇଁ ଓ ଅପରାଧ ବିହୀନ ରାଜାକୁ
କଲେ ବିକୃତ ଚୋରି କରି ଶେଷ ବସ୍ତ୍ର ଦେହରୁ ତାଂକର ।

କିଂତୁ କେଉଁ ଦେବତାଂକ ଅପାର ଐଶ୍ୱର୍ଯ୍ୟ ବଳାତ୍କାରେ
ନେଇପାରେ ଯୁବତୀ  ମନକୁ ବଂଦୀ କରି ନିଜ ଇଂଦ୍ରଭୁବନକୁ ।।

ତୁମର ମନେଥିବ କି ନାଇଁ
ମୁଁ ଜାଣେ ନା,
ତଥାପି କହୁଚି ଶୁଣ
ଯେ ଉଭୟ ପ୍ରେମ ଓ ମୃତ୍ୟୁ
ମଣିଷର ଶେଷ ଶତ୍ରୁ ;
ଏବଂ ଆମେ ସମସ୍ତେ ଜୀବନର ପ୍ରତୀକ୍ଷା ଗୃହରେ
ଆଗେ ପ୍ରେମ ଓ
ପରେ ମୃତ୍ୟୁକୁ ହିଁ ଅପେକ୍ଷା କରିଛୁଁ କାଳ କାଳ ଧରି ।

ଆହୁରି କହିଚି

ମୃତ୍ୟୁର ଅଂଧାର ଘରକୁ
ଆଲୋକିତ କରେ ପ୍ରେମର ଅତୀତ ଜୀବନ
ଓ ଶ୍ମଶାନକୁ ଶୋଭାଯାତ୍ରା ଏହାର ଏକ ନଗ୍ନ ନିଦର୍ଶନ ।

---

* ମହାଭାରତର ବନପର୍ବସ୍ଥ ନଳଦମୟଂତୀ ଉପାଖ୍ୟାନରେ ଉପଦେବତା ଶନି ଏଇ କର୍କୋଟକ ନାଗ ରୂପ ଧାରଣ କରିଥିଲେ ।

।। ଛଅ ।। ବୃତ୍ତ

ତେଣୁ ସାମାନ୍ୟ ନାରୀର ପୁଷ୍ପଲୋକରେ
ନୃଶଂସ ପୁରୁଷର ଭୟାନକ ଇଚ୍ଛା ଶୋଇପଡ଼େ
ପକ୍ଷହୀନ ପ୍ରଜାପତି ପରି କେଉଁ ସଂବୃତ ମଂତ୍ରରେ ।

ମନ ଏକ ଆହତ ଆଲୋକ ।।

ଆହତ ପକ୍ଷୀ ଯେଉଁଳି ଆଉ ଗାଏ ନାହିଁ ଗୀତ
ଆହତ ଆଲୋକ ଆଉ ନ ଦେଖାଏ ପଥ ;
ଆହତ ଗଛରେ ପବନ ଆଗ ପରି ବୁଲାଏନି ହାତ
ଆହତ ଆକାଶ ଆଉ ଜଳେ ନାହିଁ ବକ୍ଷେ ଘେନି ସୁବର୍ଣ୍ଣ ପ୍ରଭାତ ।

ସବୁ ଭଲ, ଯଦି ଭଲ ହୁଏ ଖାଲି ମଣିଷ ହୃଦୟ
ତେବେ ଯାଇ ଫୁଟେ ସେଇ ଫୁଲ ଯା'ର ନାହିଁ ଝରିବାର ଭୟ ।।

ତା ୩୧-୫-୭୪





ସମୟ ନେଉଛ
ନିଅ

କିଂତୁ କୁହ ,
ମନର ମୀମାଂସା କେବେ
କା'ର ହୋଇ ନାହିଁ ଶେଷ ;
କେବଳ ସମୟ ନଷ୍ଟ
କେବଳ ଜୀବନ ନଷ୍ଟ
ସମୟର ରହା କାହିଁ ପୋଛିବ ମନର ଶୋଷ ।

ସୂର୍ଯ୍ୟକୁ ସମୟ ଭବି
ନିଦ୍ରା ଯାଅ ନୀହାରିକାର ପ୍ରଥମ
ତାରର ଛାତିରେ କିଂତୁ କି ବିଶ୍ୱାସ
ଅଛି ଯେ ସୂର୍ଯ୍ୟ ଉଇଁବ ଆରଦିନ
ମଂଦାର ଫୁଲ ପରି—; ଏପରି କ'ଣ ନ ହେବ
କୁହୁଡ଼ିରେ ସେ ପଡ଼ିଛି ଏକ ବୁଢ଼ା ନାଲ ରେହି ଭଳି
ଜିଛି ନ ହେଲେ ପରାଗରେ ମୁହଁ ତା'ର କଳା ପଡ଼ିଯିବ ।।

ଯେତେବେଳେ ତୁମ ସମୟର ସର୍ତ୍ତ
ପାଲଟିବ ଗଳ୍ପ ଓ କବିତା କାହା ଡାଳିଂବ ବନରେ ।

ଏ ଅଥର୍ବ ଜଳବାୟୁରେ
ବିଚକ୍ଷଣ ଯୌବନ ଆଉ ରହେ କେତେ ରତି
ତେଣୁ ତେଲ ଘଡ଼ିରେ ହାତ
ତ ପୁଅ ମୁଂଡରେ ହାତ ;
ଦେଖୁ ଦେଖୁ ଘାସରୁ କାକର ଯାଏ ଶୁଖି ।।

ଏପରି ଭାବିବାରେ ଆଉ ଯାହା ଥାଉ ପଛେ
ଯୁକ୍ତି ନାହିଁ ତିଳାର୍ଦ୍ଧ ପ୍ରମାଣ ଯେ ତୁମ
ଚାହାଁଣୀର ନିଆଁ ଜାଳିଦେବ ମୋ ସଂସାର
ଜଡଗଣ୍ଡ ପରି ଓ ମୋର ପିଲାଛୁଆ
ଭାସିଯିବେ ଗଡାଗଡି ଜୁଆର ମୁହଁରେ ।

ପାହାଂତାରେ ଶୁଣିବି ବିଦେଶୀ ଗାୟକ କଣ୍ଠେ
ଓଡ଼ିଆ ଭଜନ ଯାହା ଦିଏ ପରକାଳ ସୁଖର ସାମଗ୍ରୀ
ଏବଂ ବଜାର ଦର ମୂଲାଇବି ଅପରିବର୍ତ୍ତିତ ବେସିନରେ ପାଇଁ ।

ପର୍ବ-ପର୍ବାଣିରେ ଯିବି ଡିଆଁ ଦେଖି ପେଟେସ୍ୱର
ମଠା ଧୋତି କୁଂଚକୁ ସଂଭାଳି ; କଁଉଁଥରେ ପାଣି
ଦେବି ପୁଣି ସେଇ ସୂର୍ଯ୍ୟକୁ ହିଁ ଚାହିଁ ଓ
ସ୍ୱର୍ଗତ ପିତାଂକ ଫଟୋ ତଳେ ଠିଆ ହେବି କୃତଜ୍ଞ ସଂତାନ ଆହା
ଗଗ ଚାପି ହସୁଥିବି ପଡୋଶୀ କର୍ତ୍ତାଂକ ସଂଗେ
ଆଉ ପର ନାରୀଂକୁ ମଣିବି ଆପଣାର ମାଆ ପରି
ଓ ଭିକାରୀଂକୁ ଯଥୋଚିତ ସତ୍କାର କରିବି ॥

ଏତେ ଅଂଗୀକାର ପରେ ବି
ଭାବୁଥାଅ ତୁମ ଓଦା ବାଳର ଛାଇ,
ମୋ ଘରକୁ କରିବ ଶ୍ମଶାନ
ଓ ଶସ୍ୟ କ୍ଷେତ୍ର ହେବ ପୋଡାଭୂଇଁ ;

ତା' ହେଲେ ତମର ସ୍ୱରରେ
ନାହିଁ ନାରୀର ନିଜସ୍ୱ ଭାଷା ,
ତା' ହେଲେ ତୁମର ଆଖିରେ
ନାହିଁ ଚୁଂବନର ଅନୁନୟ ଆଶା ,
ସେ ସ୍ତନରେ ନାହିଁ ମମତାର ସୁନା-ଚଂପା ମାଳ
ସେ ନାଭିରେ ନାହିଁ ମୃଗୟାର ସ୍ନିଗ୍ଧ ଶୀତ କାଳ ।

ତା' ହେଲେ ନିଃଶବ୍ଦ ବିଦାୟ ବଡ଼ ଭଲ
କାରଣ ଭିକ ନ ଦେବ ତ ନାହିଁ ,
କାହିଁକି ବା ଭାଂଗିବ ଆଉ ଅଚିହ୍ନା ଭିକାରୀର ଥାଳ ॥

ତା ୨୯-୯-୭୪



॥ ନଅ ॥ ବୃତ୍ତ

# ପରିଶିଷ୍ଟ



ଏତେ ଜିନିଷ ଥାଉ ଥାଉ
ମେଳାର ଏ ପାଖେ, ସେ ପାଖେ ;
ତୁମେ ମାଗିଲ କେବଳ ନଡ଼ିଆ ଫୁଲ ।

ନଡ଼ିଆ ଫୁଲର ପୋକ
ତା' ଗୀତରେ ଅସୁମାରି ଶ୍ଲୋକ
ସେ ଉଡ଼ାଏ ମରଣ-ଚଅଁର
ମନେ ମନେ ନିଜକୁ ଭାବେ ଗୋପର ଭଅଁର ।।

ଏତେ ଜିନିଷ ଥାଉ ଥାଉ
ଦୋକାନ ବାହାର-ଭିତର ଭର୍ତ୍ତି
ତୁମେ ମାଗିଲ କେବଳ ଗୋଟିଏ ମାଟିର ଦୀପ ।

ସେ ଦୀପର ଗର୍ଭଜଳେ
ଅମୂର୍ତ୍ତା ଦେଉଳେ ;
ମୁଁ ଦେବତା ଅନ୍ନ-ବସ୍ତ୍ର ହୀନ
ଦିଅ, ଦିଅ, ତୁମ ଦେହର ନୈବେଦ୍ୟ-ବ୍ୟଂଜନ ।।

ଏତେ ଏତେ ଜଳାର୍ଣ୍ଣବ ଥାଉ ଥାଉ
ତୁମର ସୁଶୋଭିତ ସ୍ଥଳଭାଗ ଘେରି
ତୁମେ ମାଗିଲ କେବଳ କେଇ ବିଂଦୁ ସଶବ୍ଦ ଶିଶିର
ଭୁଲିଗଲ, ଉତ୍ତପ୍ତ ସକାଳ ହାତେ ସେ କରେ ହାହାକାର !

ଏତେ ରତ୍ନ-ମାଣିକ୍ୟ ଥାଉ ଥାଉ
ତୁମେ ଆଙ୍ଖା କଲ, ଲୋଡ଼ା ଖାଲି ସ୍ଫଟିକର ମ୍ଲାନ ଚଂଦ୍ରହାର ।।

ଏତେ ପକ୍ଷୀ ଓ ସେମାନଂକ ଚଂଚଳ ଡେଣା ଥାଉ ଥାଉ
ତୁମେ ମାଗିଲ ସେଇ ଶରଘାତ ନିର୍ଦ୍ଦୋଷ ହଂସକୁ,
ରହ, ରହ, ଅଭିମାନ-ସିଂହାସନ ଛାଡ଼ି ନ ଯାଅ ବନକୁ
ରକ୍ତାପ୍ଲୁତ ଶର ନେଇ ସୁପୁରୁଷ ଦେବଦତ୍ତ ଆସୁଥିବ ମୋ'ରି ପାଖକୁ;
ଦେବି, ଦେବି, ହଂସଟିଏ ନିଶ୍ଚେ ଦେବି
ତୁମକୁ ନ ହେଲେ ମଧ୍ୟ ତୁମ ବାହୁ-ବଂଧନକୁ ;
ନ ହେଲେ ଦେଉଚି କଥା ତା'କୁ ମୁଁ ଉଡ଼ାଇ ନେବି
ତା'ର ପ୍ରିୟ ପରିବାର ବର୍ଗ ନିକଟକୁ ।

ସବୁ ହେଲା ଏବଂ ତୁମେ ଯାତ୍ରା ପାଇବାକୁ
ଚାହିଁଥିଲ ପ୍ରାୟ ପାଇଗଲ—; କିଂତୁ ଦିନୁଁ ଦିନ
ତୁମ ଉଚ୍ଚାରଣ ପ୍ରେମାବିଷ୍ଟ ହେବା ପରିବର୍ତ୍ତେ
ଅନର୍ଥର ହେଉଛି କାରଣ ।

ଦେଖ , ଦେଖ ;
ଯେଉଁ ମୁହୂର୍ତ୍ତରେ ହୁଳହୁଳୀ ,
ସେଇ ମୁହୂର୍ତ୍ତରେ ବାଜେ ପୁଣି ଶଂଖ ॥

ତା ୧-୧୧-୭୪



॥ ଏଗାର ॥ ବୃତ୍ତ

# ଦୃଷ୍ଟାଂତ



୧

ନିଃଶବ୍ଦତାର ଆଶ୍ଚର୍ଯ୍ୟ ଦୀପ
ରୁ
ପ୍ରଥମ ଯେଉଁ ଶବ୍ଦ ଭାସିଆସିଥିଲା
ତାହାର ନାମ ପ୍ରେମ ।

କେହି କେହି କହଂତି
ପ୍ରେମ ଏକ ନିର୍ଜନ ଅହଂକାର ॥

୨

ଶବ୍ଦର ଶ୍ୟାମଳ ତରଂଗ
ରୁ
ଶେଷ ଯେଉଁ ବିଂଦୁ ସ୍ତବ୍ଧ ହୋଇଥିଲା
ତାହାର ନାମ ମୃତ୍ୟୁ ।

କେହି କେହି କହଂତି
ମୃତ୍ୟୁ ଏକ ପରିଚ୍ଛନ୍ନ କାରାଗାର ॥

୩

ମୁଁ କ'ଣ ମାଗିଥିଲି
ଆଉ ମନେ ନାହିଁ ,
ବୋଧହୁଏ ଏତେଦିନ ଦେଖିଥିଲି
ଗୋଟେ ଅବିଶ୍ୱାସ୍ୟ ଲୋଭନୀୟ ଛାଇ
କାହାର
ପ୍ରେମର, ନା ମୃତ୍ୟୁର ॥

॥ ବାର ॥ ବୃତ୍ତ

୪

ମୋ ଛାତିରେ
ଭଲ ପାଇବାର ଭୃଙ୍ଗ ପଦଚିହ୍ନ ।

ମୋ ପିଠିରେ
ମଲ୍ଲି ମକ୍ଷିକର ମଲ୍ଲି-କଣ୍ଟ ବନ ॥

୫

ସ୍ଥିର କର

କାହାକୁ ନେବ ଆପଣାର
ସ୍ୱପ୍ନାଲୋକ ସିଂହାସନ ଧରି ,
କାରଣ ମୁଁ ଜାଣେ ଏତିକି
ଯେ କବିତା ହୁଏ ନି ଗଢ଼ା
କୋଣାର୍କ ବା ତାଜମହଲ ପରି ;

ଆମରି ହାତରେ ,
ଏହା ଫୁଟେ ତା' ଇଚ୍ଛାରେ
ନାମହୀନ ତାରା ଫୁଲ ଭଳି ॥

ତା: ୬-୬-୭୪



# ଲୋଡ଼ା ନାଇଁ



ହେଉଥିଲେ ହେଲି ମୁଁ ଅଶୌଚ ବିଶର ମହାନ୍ତି
ପାଦରୁ ମୁଣ୍ଡ ଯାଏ ସମୟର ନାମାବଳୀ ପନ୍ଦୁରା ଝୁଲାଇ
ଶ୍ରୀହୀନ ହାତରେ ଖୋଜେ ପିତାଙ୍କର ନାଭିପଦ୍ମ ଜବା
ପଦ୍ମମଣି ଯାହା ପୋଡୁ ପୋଡୁ ଦୈବାତ୍ ରକ୍ଷା ପାଇଥିଲା
ଦୁଷ୍ଟ ଏକ ଯବନର ହାତୀ-ଘୋଡ଼ା ପରିବୃତ ନିଆଁର ଜାଲରୁ

ଆପାତତଃ ସତ୍ୟ ଭାବେ ଜଣାଯାଉଥିବା
ବିଶ୍ୱାସ ହିଁ ମୂଳଧନ ମୋର ଏବଂ ଏ
ଆପାତ ସତ୍ୟ ପରିଣତ ସତ୍ୟର ଛାଞ୍ଚରେ ;  ୬।୨।୭୨
କେବଳ ଯେମିତି ଘନ ଧୂମ ପଟଳ ବି
ଆସନ୍ନ ବୃଷ୍ଟିର ଦିଏ କରୁଣ ସୂଚନା ।

ଏତେ ବର୍ଷ ପରେ ମଧ୍ୟ ମୁଁ ଖୋଜୁଛି
ନାଭିପଦ୍ମ ଯଦିବା ତୁମକୁ ଘେରି ସୁଶିକ୍ଷିତ
ମାଳ ମାଳ ସ୍ୱତନ୍ତ୍ର ପ୍ରହରୀ ; ତା' ସତ୍ତ୍ୱେ
ଶୁଣୁଛି ନାଭିର ନିଃଶ୍ୱାସ ଘରର ଘର ଲୋକ ଉଠିଥିବା ବେଳେ ।।

ଖୋଜିବାର ଏକ ଅଦ୍ଭୁତ ଲକ୍ଷ୍ୟ ଅଛି ଯାହା
ମନ୍ତ୍ର ମୁଗ୍ଧ ଭାବେ ଟାଣି ନିଏ ଜାଗାରୁ ଜାଗାକୁ
ଶ୍ରୀକ୍ଷେତ୍ରରୁ ☼ ଗୁପ୍ତକ୍ଷେତ୍ର, ଚିଲିକାରୁ ଅଂଶୁପା ପର୍ଯ୍ୟନ୍ତ
ଓ ଯାହା ବେମାଲୁମ ଠାଣିରେ ଚାଲେ ବାଟ କାଟି
ଶୂନ୍ୟର ହାତରେ । ତୁମ ନାଭି ଠିକ୍ କି ବିଚିତ୍ର
ଭାବରେ ଗୋଲ ଯା'ର ମାଂସ ଯୁକ୍ତ ପରିଧିର ମାପ
କ'ଣ ମାପି ପାରେ ବିଜ୍ଞାନର ଶେଷ ଆବିଷ୍କାର

ଗୁପ୍ତକ୍ଷେତ୍ର:—କେନ୍ଦ୍ରାପଡ଼ାସ୍ଥିତ ପ୍ରସିଦ୍ଧ ଦେବତା ଶ୍ରୀବଳଦେବଜୀଉଙ୍କ ପୀଠକୁ "ଗୁପ୍ତକ୍ଷେତ୍ର" କୁହାଯାଏ । ଏହା ମଧ୍ୟ "ତୁଳସୀକ୍ଷେତ୍ର" ନାମରେ ବିଖ୍ୟାତ ।

ଖୋଜିବା ଲୋକର ମିନା ହାତ ଆ'ଗୁଠି ବୁଢ଼ା ହୁଏ
ଓ ଆଖି ଭିତରର ପୁଅ ମରିଯାଏ
ନାଭିମୂଳ ମଣିର ଲୋଭରେ । ତେବେ ବି ବିଶର ମହାନ୍ତି
ପିଂଧେ ତା' କୋଟଟ ନାମାବଳୀ ଏବଂ ଚମକୁ ଚିକ୍କଣ
କରେ ନୂଆ ସୋରିଷ ତେଲର ଘଡ଼ିରେ ॥

ତା' ଅଂଟାର ଗାମୁଛା ଦିଶେ
ଖତ କାଳି କିଣା ହେବା ପରି ,
ଏହାର କାରଣ କ'ଣ ଯଦି କେହି
ତାହାକୁ ପଚାରେ ; ସେ କହିବ
ମୁଁ ଖୋଜୁଚି ପଦ୍ମମଣି ନାଭିମୂଳ କେନ୍ଦ୍ର କରି
ଲୋମ ପରିଧିରେ ; ସେ କହିବ !

ତା' ବସନ୍ତ ଫେରିଯାଏ
ଯେତେବେଳେ ମାଛର ଆଖିରେ ଲୁହ
ଏବଂ ଚଢ଼େଇଙ୍କ ସ୍ୱରରେ
ହତାଶ ଭାବ ଭରି ଉଠେ ;
ଓ ଚନ୍ଦ୍ର ଯେବେ ପଦଚାରଣା କରେ
ସାରା ରାତି ହ୍ରଦ ଅଗଣାରେ !

ରତ୍ନ ସିଂହାସନ ପରେ ବିଜେ ଆଜି
ଦାରୁବ୍ରହ୍ମ ଅଂତଃହିତ ମଣିପଦ୍ମ ନାଭିକମଳରେ ,
ଓ ବିଶର ମହାନ୍ତି ଠିଆ ହଜାର ଲୋକଙ୍କ
ପରି ହାତ ଯୋଡ଼ି ପାହାବ ଉପରେ ॥

ତା ୯·୭·୭୪



# ପାରୁହେବା



ନିଅଁକୁ ଡେଇଁଯିବା
ନଈକୁ ଡେଇଁଯିବା
ଅପେକ୍ଷା
ସମୟକୁ ଡେଇଁଯିବା
ଆହୁରି କଠିନ କାମ ;

ନିଆଁ ଡେଇଁପାରିଲେ ହୁଏତ ତୁମେ
ପାଇ ପାର ଜଳର ସଂଧାନ ,
ନଈ ପାରି ହେଲେ ହୁଏତ ତୁମେ
ପାଇପାର ମାଟିର ବଂଧନ

କିଂତୁ ସମୟର ଉତ୍ତୁଙ୍ଗାକୂଳକୁ
ସମସ୍ତେ ହୁଅଂତି ପାରି ସହି ସହି
କପାଳ ଲିଖନ—; କେତେବେଳେ
ଆକାଶ ସ୍ୱଚ୍ଛ , କେତେବେଳେ
ଥମ୍ ଥମ୍ ମେଘର କଳାରେ ।
କି ନିଷ୍ଠୁରି ଲେଖାଅଛି ଆମ
କପାଳରେ ସମୟକୁ ଡେଇଁବା ପୂର୍ବରୁ ।

କିଏ କହିବ ସେଠାରେ କେହି ପୁଷ୍ପବୃଷ୍ଟି
କରେ ଅହୋରାତ୍ର କିଂବା ମୃତ୍ୟୁ ପଡେ ଝଟି
ବିଶୁଦ୍ଧ ବିଭୂତି ପରି ଲୋକଙ୍କେ କାଂଧରେ ।।

ଦୁଃଖର ଦୀର୍ଘଶ୍ୱାସ
ହେଉଛି ସମୟର ଏକଲବ୍ୟ ଧ୍ୟାନ,
ସୁଖର ସ୍ୱର୍ଣ୍ଣ-ବଳୟ
ହେଉଛି ସମୟର ଇମନ୍‌-କଲ୍ୟାଣ ।

।। ଷୋଅଳ ।। ବୃତ୍ତ

ତେଣୁ ଚଣ୍ଡିଦାସ କହେ
ଭୂମିର ଉଷୁମ କୋଳରେ ସମୟ ଶୁଏ
ତା'ର ସୁଖ-ଦୁଃଖ ଭୁଲି ଏବଂ ଭୁଲିଯାଏ
ବୃହଦାହ ଓ ବୀଭତ୍ସ କଳଙ୍କର ପରିତ୍ୟକ୍ତ ଶେଯ
କ୍ଳାନ୍ତ ନଈ ପରି ତା' ଜୀବନ ହଜିଯିବା ଆହୁରି ସହଜ ।।

ତା ୧୬·୧୨-୭୪



।। ସତର ।। ବୃତ୍ତ

# ନାମକରଣ



ହେଲା ଏବେ ପିଲାଦିନୁଁ ଶୁଣିଅଛି
ଈଶ୍ୱର କରିଲେ ଇଚ୍ଛା ମଲାଗଛରେ
ଫୁଟିପାରେ ତାଜାଫୁଲ ଠିକ୍ ଦିନର ମଝିରେ
ଏବଂ ଓହ୍ଲାବାଲିରେ ଖରା ଶୋଇପାରେ
ପ୍ରଥମ ପ୍ରସୂତୀ ପରି , ତାହାର ହାତ ଛୁଇଁପାରେ
ତାଳଗଛ ; ତା' ମୁହଁରେ କେତେ ହସ
ମିଳାଇ ବି ପାରେ ସ୍ତବ୍ଧ ମଧ୍ୟାହ୍ନର ଡାହୁକ ଡାକରେ ।

ଈଶ୍ୱର କରିଲେ ଚିଂତା ଗତି ହୁଏ ଅଭୟ ଅରଣ୍ୟ
ଓ ଏ ଘରର ସମର୍ଥ ଲୋକ ସବୁ ପରିଣତ ହେବେ
ମୁର୍ଦ୍ଦାରରେ । ମୁଁ ମଧ୍ୟ ମୁର୍ଦ୍ଦାର ହୋଇ ଜଗିଥିବି
ସେମାନଂକେ ସଫା ଶରୀରକୁ । ଗୋଟେ ମୃତବ୍ୟକ୍ତି
କେତେ ସହଜରେ ପହରା ବି ଦେଇପାରେ
ମୃତ୍ୟୁର ନିଶାରେ ଚଢ଼େଇର ପେଟ ଭଳି
ଓଲଟିଥିବା ଲକ୍ଷାଧିକ ପରଳ ଛାତିରେ ।।

ଈଶ୍ୱର ବୁଲି ଆସିଥିଲେ— ; ଦେହରେ
ଆକାଶ ରଂଗର ଜାମା ଓ ପାଦରେ
ଧୂଳିଧୌତ ଅସଂଭବ ବିରାଟ କଠଉ ;
ମୁହଁରେ ନିଲାମ—ଡାକିଲାବାଲାର ଅର୍ଥହୀନ
ଶବ୍ଦର ନଈ । ସେ ଆସିଲେ ଏବଂ ମୋ ଘରେ
ପଡ଼ିଥିବା ମଲା ଗଛମାନଂକୁ ଚାହିଁ କେଉଁ କରୁଣାରେ
ହସିଲେ କେଜାଣି— ; କୌଣସି ଗଛରେ ଫୁଲ ତ
ଫୁଟିଲା ନାହିଁ ବରଂ ସେ ସବୁ ହଜିଗଲେ
କେଉଁ ମ୍ୟାଜିକ୍ ଦିଆସିଲି ଖୋଳର ଭିତରେ ।।

ଆଜିଯାଏ ବୁଝାଯାଇ ନ ଥିବା
ସେଇ ନିର୍ମମ ସତ୍ୟକୁ ଚାପି ରଖି ,
ଯାତ୍ରାରେ ନୂଆ ରଜା-ପାର୍ଟ କରୁଥିବା

|| ଅଠର || ବୃତ୍ତ

ଅଶିକ୍ଷିତ ଭେଂଡାର ଗୌଣ-ସାଧୁବାକ୍ୟ
ଉଚ୍ଚାରଣ ରୀତିରେ ସେ କହିଲେ—
ଏଇ ଚାହିଁ, ଚୈତ୍ର ସକାଳରେ
ଘନିଷ୍ଠ ଅତିଥି ପରି ଶୀତ ଫେରିଆସେ
ଶୀତଳତାର ପତଳା ଚାଦର ପିଂଧି—;
ତା'ର ତୃଷ୍ଣାର ଚତୁର ଆଖି
କ'ଣ ଖୋଜେ ? କେଉଁ ଲୋଭର ଶୋଷ
ତା' ଦେହକୁ ଏବେ ବି ରଖିଛି ଜୀବଂତ ?

ତୁମେ ଆଦ୍ରତା ଖୋଜିବା ପାଇଁ
ଦୌଡ଼ ନା କୌଣସି ସମୁଦ୍ର ମଝିକୁ
ଯେହେତୁ ଖଣ୍ଡିଏ ଓଦାକନା ଶୋଷି
ନେଇ ପାରେ ଅକ୍ଳେଶରେ
ଶରୀରର ବିଶେଷ ଉତ୍ତାପ ।।

ଅନେକ ପୀତ ରଂଗର ପତ୍ର
ଜଣାଯାଂତି ମନକୁ କଅଁଳ
ଆକାଶରେ ମେଘ ଭର୍ତ୍ତି ହେଲେ—,
ଏ ବୋଧେ ମନର ଭ୍ରମ ଯା'ର
ପ୍ରଭାବରେ ଖଗ ଚାଲେ ପାଣି ପରି
ହିଡ଼ ଓ ଝିଆରୀ ଭେଦି ନିଃଶବ୍ଦ ଶବ୍ଦରେ ।

ଶବ୍ଦ କିଂତୁ ମାୟା ଛଡ଼ା ଆଉ
କିଛି ନୁହେଁ—; ଯା'ର ଗୋଲ ଫୋଟକାରେ
ଈଶ୍ୱରଂକ ମୁହଁ ଦିଶେ ବୁଢ଼ା ଯାଦୁକରଂକ
ପ୍ରଶଂସାଭାଜନ ମୁହଁ ପରି ନିୟଂତ୍ରିତ ଆଲୁଅରେ
ଭେଲିକିରେ ପହଁରି ପହଁରି
ମୁହଁ ଚୋରା ହତଭାଗ୍ୟ ଦର୍ଶକମ ନଂକୁ ।।

ଆଉ ନୁହେଁ—;
ଆଉ ସହ୍ୟ କରିବାରେ ଲାଭ ନାହିଁ
କୌଣସି କସ୍ତୁରୀ ଆଲିଂଗନ ଧନ୍ୟ କେଉଁ
ମହାର୍ଘ୍ୟ ଚଂଦନର ଅବା କ୍ଷୀରୋଦ୍ରା ପାଟ-ଯୋଡ଼ର
ଅତର୍କିତ ଆବିର୍ଭାବ ଉତ୍ସବ ପାଇଁ—;
କାହାର ବା ମୂର୍ଚ୍ଛା ପ୍ରାୟ ଅବସ୍ଥା ଆସିବ

।। ଉଣେଇଶି ।। ବୃତ୍ତ

ଆଉ ସେ ଯଦି ଶୁଣେ ଏକା ଗଂଡୁଷରେ
ଶୋଷିନେଲ୍ ସମୁଦ୍ର ପର ଏ—, କାରଣ
ଆମର ପାପୁଲି ଜଳେ ଅନ୍ୟର ରକ୍ତ ଲାଳସାରେ
ଓ ଆମ ଶରୀର ଖେଳେ ଓଲଟା ଢଂଗରେ
ଭ୍ରମାତ୍ମକ ଭାଗ୍ୟ ଭଳି କେଉଁଦିନ ପାଇବାକୁ ସାକ୍ଷାତ-ଖବର ।

ଏ ଆମର ବିଡ଼ମ୍ବନା ଯେ ବାଲ୍ୟକାଳେ
ଗାଇଥିବା ପ୍ରାର୍ଥନାର ଶେଷ ନାହିଁ ଏ ବୁଢ଼ା
ବୟସ ଯାଏଁ କିଛି ପାଇବା ପାଇଁ ନୁହେଁ
କେବଳ ପାଇବା ନିଶାରେ । ଆମର
ଏ ମଳି ଓ ପୁରୁଣା ଗଛ ଠିଆହୁଏ
ଅଧୀନସ୍ଥ ପ୍ରଜା ପରି ଫୁଲର ଗର୍ବରେ
ଭାଂଗି ପଡୁଥିବା ସ୍ନେହ ସ୍ୱପ୍ନାବିଷ୍ଟ
ଗଛର ଛାଇରେ ।।

ମହାରାଜାଙ୍କ ଫେରିବା ବେଳେ
ତାଙ୍କ ଶରୀର ଦିଶୁଥିଲା ମାଲ ଖଲାସ ପରେ
ଏକ ଦଦରା ଜାହାଜର ଅଭ୍ୟନ୍ତର ଭଳି,
କିନ୍ତୁ ତାଙ୍କ ମହିମାମୟ ପଦକ୍ଷେପରେ ସେ
ନିର୍ଭେ ବିଭୋର ଏବଂ ସେ ଅତି ଖୋଲା
ମନରେ କହିଲେ ; ଏଣିକି ପ୍ରାର୍ଥନାର
ଅନ୍ତସ୍ୱର ଓ ଅକ୍ଷର ସବୁ ଅବିଳମ୍ବେ
ଓଲଟ ପାଲଟ କର; ତା'ପରେ ଦେଖିବ
ମୁଁ ମଧ୍ୟ ମରି ପଡ଼ିଅଛି ଅନ୍ୟାନ୍ୟ ମୂର୍ଖାର
ମେଳରେ ବାସି-ମେଘ ପାଣିର ଲୋଭରେ ।।

ତା ୨୨-୩-୭୪



# ଆକାଶର ନୂତନ ଔପନ୍ୟାସିକା



''ଆକାଶ ଦିଶେ କି ସୁନ୍ଦର ।
ତାହାକୁ ରଚିଲେ ଈଶ୍ୱର ।।''—ବର୍ଣ୍ଣବୋଧ ।

ଯେତେ ବଡ଼ ଯୋଦ୍ଧା ଅବା ଦିଗ୍‌ବିଜୟୀ ଲୋକ
ହେଉ ସିଏ—; କିଏ ନ ଚାହିଁଛି କହ ଆକାଶକୁ
ତା' ଶେଷ ନିଦ ଆରମ୍ଭ ପୂର୍ବରୁ । ଆକାଶରେ
ଦେଖ କେତେ ଲେଖାଅଛି ଯୁଦ୍ଧର କାହାଣୀ ଏବଂ
ଅବଲୁପ୍ତ ନଗରର ସମୃଦ୍ଧ ଅତୀତ ଯାହା ଆସେ
ପ୍ରେମ ହୋଇ ସମୟ ମନରେ ଓ ସେଇ ନୀଳାଭ ମନରେ
ପ୍ରେମ ଆଉ ପ୍ରେମ ଖାଲି କି ଆନନ୍ଦେ ନାଚେ ଖେଳି ବୁଲି ।।

କେତେ ଶକୁନ୍ତଳାଙ୍କ ଅସତର୍କ ପ୍ରେମର ମୁହୂର୍ତ୍ତ
କରେ ଆକାଶକୁ ନୂତନ ଉଜ୍ଜ୍ୱଳ ଓ ମେଘର
ଲହରମାନେ ହଟିଯାନ୍ତି ପଛକୁ ପଛକୁ ପରାଜିତ
ସୈନ୍ୟ ଦଳ ପରି । କେତେ ଦୁର୍ଯ୍ୟୋଧନ ଆଉ ଜରାସନ୍ଧଙ୍କ
ଆକଣ୍ଠ ଇଚ୍ଛା ଧୂଆଁ ହୋଇ ମିଶିଗଲେ ଓ ଆହୁରି ଆଶ୍ଚର୍ଯ୍ୟ
ଯେଉଁ ପୁରୁଷ ଯାଙ୍କୁ ନିଜର କୁହୁକ ବୋଲି କରିଲେ ସ୍ୱୀକାର,
ଆହୁରି ଆଶ୍ଚର୍ଯ୍ୟ ତାଙ୍କ ଲୀଳା-ଖେଳା ସବୁ ଗଲା ଚାଲି
ଶୂନ୍ୟ କୋଳର ଶେଯକୁ । କେତେ ପ୍ରେମ, କେତେ ବିରହର ଦାବାନଳ
କେତେ ମାନ, କେତେ ଅଭିମାନ, ଅନୁରାଗ, ବିରାଗ-ବୈରାଗ୍ୟ,
ସେନା, ସେନାପତି, ରଥ, ଅଶ୍ୱ, ଗଜ ଆଉ ରଣ ଆୟୋଜନ
'ପାଇଁ କେତେ ଶଙ୍ଖଧ୍ୱନି—; ଶର ଆଉ ଶରଶଯ୍ୟା
ନେଇଗଲା ଟାଣି ସର୍ବହୀନ ଅନ୍ତରୀକ୍ଷ ଓ ସେ
ସେମିତି ଶୋଇଅଛି ଗୋଟିଏ କଡ଼ରେ ।।

।। ଏକୋଇଶି ।। ବୃନ୍ଦ

କି ଅଦ୍‌ଭୁତ ଉଦାରତା ତା' ଦେହର
ଆଦିମ ରଂଗରେ ଯା'ର ସାମାନ୍ୟ ପ୍ରତିବିଂବ
ମଧ୍ୟ ଆମର ପ୍ରେମକୁ କରେ କ୍ରମଶଃ କନିଷ୍ଠ ,
ତେଣୁ କାହା ଭଲ ପାଇବାରେ ଯଦି କେବେ
କ୍ଳାଂତି ଆସେ—; ଆସେ ରୁଗ୍‌ଣ ଯଂତ୍ରଣାର
ବିଯୁକ୍ତ ବିଷାଦ—; ବୋଧଶକ୍ତି ଲୋପ ପାଇଗଲେ
କିଏ ଯଦି ମାଗଇ ଭିକ୍ଷା ତୋ ନୀଳର
ବ୍ରହ୍ମାଂଡକୁ ଦୁଃଖର ପ୍ରଥନ୍ତର ଉପଗୁପ୍ତ ପରି
କିଂବା ଅବଧୂତ ମନ ନେଇ ଦଳରୁ ବିଚ୍ଛିନ୍ନ
କେଉଁ ରୁପା-ରଂଗ ସରଳ ପକ୍ଷୀଟିଏ
ବନ୍ଧୁ ଭରସାରେ ଯଦି ତୋତେ ସ୍ନେହ ପଚାରେ

'କାହାଂତି ମୋ ଈଶ୍ୱର—, କେଉଁଠାରେ ଲୁଚାଇଛ
ମାଆକୁ ମୋହର ଓ ମେଇ ଲୋଭନୀୟ ନୀଳ ପାହାଡ଼ର
ପଛପଟେ ଶୋଇଅଛି କେଉଁ ମାୟାର ନଗର—;
ତୁମେ କି ଉତ୍ତର ଦେବ
ହେ ଆକାଶ, ଆମକୁ ଏଥର ।

କାହିଁ ତ ମୁଁ କେବେ ଦେଖିନାହିଁ
କୌଣସି ନକ୍ଷତ୍ର ଆଖିରୁ କିଛି ଲୁହ ଖସିବାର
ଆପାତତଃ ମୋ ଦୁଃଖର ସୌଜନ୍ୟ ଦୃଷ୍ଟିରୁ ;
କାହିଁ ତ ମୁଁ କେବେ ଶୁଣି ନାହିଁ
କୌଣସି ଛାୟାପଥ ଧବଳ କଂଠରୁ
କିଛି ଶବ୍‌ଦର ନୁପୂର ଗୀତ
ମୋର କାତରତା ପାଇଁ ଯାହା ଟିକେ ସଂବେଦନା ।।

ତା' ହେଲେ ତୁମକୁ ସୁଂଦର କହି
ତୁମ ମହନୀୟ କ୍ଷୁଦ୍ରତାରେ ଯେଉଁ କବି
ଆପଣାକୁ କରିଲେ ଅର୍ପଣ ଥୋକେ
ଚୂନା-ଫୁଲ ଭଳି; ଆଶାରେ ଆରକ୍ତ
ଆୟତ ବଦନ ତାଂକ ନିତି ଫେରେ ସଂଜ
ଏବଂ ସକାଳର ପ୍ରଥମ ଦୁଃସାହସୀ ତାରର
ଦୀର୍ଘ ଅଲୁଅରେ । ଯଦିବ ତାଂକର ଚକ୍ଷମା
ପିନ୍ଧି ଇଂଦ୍ରଧନୁ ମନକୁ ଚାହିଁଲେ ତାହା ଆଉ

ସେପରି ହୋଇ ନ ପାରେ ବି ପ୍ରତିଭୂତ
କଂଦର୍ପର ଧନୁସମ ବିରାଗୀର ନିର୍ଜନ ହୃଦରେ ।

ତଥାପି ଶବର•ମୁହଁ•ରଖାଯାଏ ଊର୍ଦ୍ଧ୍ୱଗତି
ଦେହର ଅନ୍ୟାନ୍ୟ ଅଂଶ ବଂଧା ହେବା ସତ୍ତ୍ୱେ ;
ମସ୍ତିଷ୍କର ଶେଷ ନିଆଁର ନିଃଶ୍ୱାସ ଆଶ୍ରୟ ନିଏ
ନଈ ପରି ସେ ବାଷ୍ପବାରିଧିର ସାମାନ୍ୟ କୋଣରେ ।।

ତା ୧୪-୪-୭୯



# ସୁଦୂର ଅତୀତ

●

—ଏକ—

ଅକସ୍ମାତ ପରିଚିତ ଜହ୍ନ ଆଲୁଅରେ
ମୋ ଗୋଡ଼ ଖସିଲା ପରେ
ନୋଳିଆକୁ ପଚାରିଲି  ସମୁଦ୍ରକୁ
ଏତେ କିଆଁ ଦିଶୁଛି କରୁଣ,
କି ଆଶ୍ଚର୍ଯ୍ୟ ତୁମର ଢଂଗାରେ
ଏବେ ଏ ସମୁଦ୍ର ଭାଗ ଭାଗ ହୁଏ ;
ଜହ୍ନରୁ ଓହ୍ଲାଏ ରାତି
ସହସ୍ର ବୁଢ଼ିଆଣୀ ଗୋଡ଼ ପରି ଓ ନୀଳର
ପ୍ରତ୍ୟେକ ଆଖିରେ ତା'ର ନିଃଶବ୍ଦ ଆକ୍ରମଣ ।

କେଉଁ ଜନ୍ମରେ ମୁଁ ଏକ
ନୋଳିଆ ଥିଲି ଏବଂ ମୋର ଦେହସାରା
ସ୍ୱର୍ଗର ପାଉଁଶ ଡିଆଁମାରେ ମୃଗଶିଶୁ
ସମ, ନଚେତ୍ ଏ ଦେହ ଅଟେ ନିଶୁଣୀ ଏକ
ସ୍ୱର୍ଣ୍ଣଦ୍ୱାର ପାଇଁ ।।

ଜହ୍ନରେ ଖସଂତି ନାହିଁ ପ୍ରେତ କେବେ,
ଶିଶୁ କୋଳେ ଜନ୍ମ କେବେ ଶୋଇନି ଏ ଯାଏ
ତଥାପି ସ୍ୱର୍ଗର ତୋରଣ ସବୁ ଭାଗିଯାଂତି
ପଚାଭଳି ବିଶେଷତଃ ଏ ଜହ୍ନ ରାତିରେ ।

ରାମ ଗଲେ ବନସ୍ତକୁ
କୃଷ୍ଣ ଗଲେ ମଥୁରାଭୁବନ
ଏବଂ ଏ ନୋଳିଆ ଗଲା
ସମୁଦ୍ର ମଂଥନ ପାଇଁ
ସମସ୍ତଂକ କାଖରେ ଥିଲା
ଅସ୍ତ୍ର ଏକ ବିଭିନ୍ନ ପ୍ରକାର ।।

ନୋଳିଆର ଧକାଟୋପି ଯାହା ମୋର
ବହୁ ଭ୍ରୂଣ ହତ୍ୟା ପରେ କେଉଁ ଏକ
ବିଶେଷ ସ୍ମୃତିର ସାମାନ୍ୟ ଅଂଶ ପରି
ଏତେବଡ଼ ଅତୀତର ସମୁଦ୍ରରେ ବିଂଦୁଭଳି
ଜଣା ପଡୁଥିଲା । ନୋଳିଆ ନ ଥିଲେ
ତେବେ ସ୍ମୃତି ମୋର ହଜି ଯାଇଥାଂତା ।।

—ଦୁଇ—

ତୁମ ନିକଟରେ
ମୋର ଯେତେ ଆଂତରିକ
ଆତ୍ମ ସମର୍ପଣ ଓ ନିବେଦନ
ସବୁ ଫେରିଆସିଛି ନାରୀର
ଲୋଭନୀୟ ଅହଂକାର ଏବଂ ଈର୍ଷାରେ
ଏହାର କଂକାଳ ଆଜି ଖାଲି ହସୁଛି ।।

ମୋ ପାଖରେ
ତୁମର ଯେତେ ଛଳନା ,
ଘୃଣା ଓ ଅସଂଭବ ଦାଂଭିକତା
ସବୁ ପାଇଛି ଏକ ପୁରୁଷର
କାଂତିମୟ ସ୍ପର୍ଶ ଏବଂ ମୋର ଛାତିରେ
ତୁମେ ଆଜି ଏକ ବିଶ୍ୱମୋହିନୀ ନାରୀ ,
ଯଦିଚ ମୋ ପାଇଁ ନୁହେଁ
ଅନ୍ୟ , ଅନ୍ୟ କେଉଁ ଅତି ସାଧାରଣ
ତଥାକଥିତ ପୁରୁଷ ପାଇଁ ।।

ସ୍ନେହ ଓ ପ୍ରେମର
ଅପମୃତ୍ୟୁର ଗର୍ଭରେ
ଲୁଚିରହେ ପ୍ରତିଶୋଧର ରୁଦ୍ର ଭ୍ରୂଣ
ଏବଂ ଘୃଣାମୟ ଚକ୍ଷୁରେ ସେ
ଧ୍ୱଂସ କରେ ଆଂତରିକତାର କବଂଧ-କବର ।।

ମୁଁ ଯଦିଓ
ଏକ ଅନାସକ୍ତ
ପରାସ୍ତ ପ୍ରେମିକ ,
କିଂତୁ ରଣାଂଗନର

ରକ୍ତ ସ୍ୱାଦରେ ମୁଁ
ଅଂଧ କରିଦେବି
ତୁମର ସେଇ ବିଶ୍ୱାସହୀନ
ବେଶ୍ୟାର ଆଖିକୁ ଓ ତୁମର
ନିକ୍ଷେପିତ ବକ୍ଷକୁ ବିଦୀର୍ଣ୍ଣ କରି
ବିତରଣ କରିଦେବି
ରାସ୍ତାର ବୁଲା କୁକୁର ଓ
କୁତ୍ସିତ ଶାଗୁଣା ପଲ ମୁହଁରେ ।।

ତା ୧୧-୯-୭୩



।। ଛବିଶି ।। ବୃତ୍ତ

# ଏକ ଅଲୌକିକ ଇଚ୍ଛାର ବୃତ୍ତ



ଜୀବିତ ବା ମୃତ
ବା ଜନ୍ମ ନେବାକୁ ଅପେକ୍ଷା
କରିଥିବା କୌଣସି ଜ୍ୟୋତିଷ୍ମାନ ଗ୍ରହକୁ ପଚାର
ଅବନତ ମସ୍ତକରେ ସେ କହିବ
ମୋର ପ୍ରେମ ତା'ଠାରୁ ଆହୁରି ଉଜ୍ଜ୍ୱଳ ।

ମାନସ ସରୋବରର ପ୍ରଶାଂତ ନୀଳବକ୍ଷରେ
କୌଣସି ଦୁର୍ଲଭ ଅମୃତମୟ ରକ୍ତକମଳକୁ ପଚାର
ପ୍ରସ୍ଫୁଟିତ ଓଷ୍ଠରେ ସେ କହିବ
ମୋର ପ୍ରେମର ରକ୍ତ ତା'ଠାରୁ ଆହୁରି ଗଭୀର ।।

କାଂଚନ ଜଂଘାର ଶୁଭ୍ର ତୁଷାର ଛାତିରେ
ଦେବତା ମାନଂକ ପ୍ରଲଂବିତ ଛାୟାକୁ ପଚାର
ନିର୍ଲିପ୍ତ କଂଠର ଇଂଗିତରେ ସେ କହିବ
ମୋର ପ୍ରେମ ତା'ଠାରୁ ଆହୁରି ପବିତ୍ର ।

କନ୍ୟାକୁମାରୀର ଶେଷ ଶିଳାକୁ ପଚାର
ମହାସାଗରକୁ ଛୁଇଁ ସେ କହିବ
ମୋର ପ୍ରେମ ଅପରୂପ ଅଥଚ ବିଚିତ୍ର ।।

ଯଦି ତୁମେ ଏତେ ଦୂରଦୂରାଂତରକୁ ଯିବା ପାଇଁ
ନାରାଜ ; ତେବେ ଘର ଆଗରେ ଥିବା ଆଂବଗଛର
ନୂଆ ପତ୍ର ବା ନୂଆ ବଉଳକୁ ପଚାର
ଦକ୍ଷିଣ ଆକାଶ ଛୁଇଁ ଆସୁଥିବା ନିର୍ଦ୍ଦିଷ୍ଟ ପବନର
ଆସକ୍ତ ଚୁଂବନର ବିଭୋର ଲଗ୍ନରେ ଝୁଲି ଝୁଲି ସେ କହିବ
ମୋର ପ୍ରେମ ତା'ଠାରୁ ଆହୁରି ନିବିଡ଼ ।

।। ସତେଇଶି ।। ବୃତ୍ତ

ତୁମ ପାଦତଳ
ଅବଗୁଂଠିତା ମାଟିକୁ ପଚାର
ମାଟିପରି ଉତ୍କଂଠିତ ଭିତର ମନକୁ ପଚାର
ଦେହର ସୀମିତ ସଂବଳର ଅହଂକାର ଭେଦ କରି ସେ କହିବ
ମୋର ପ୍ରେମ ତୁମ ନାରୀତ୍ୱଠାରୁ
ଆହୁରି ମହିମାନ୍ୱିତ, ଆହୁରି ପ୍ରଗାଢ଼ ।।

ଏ ଯାହା କହିଲି
ତାହା ନୁହେଁ ଜଣକର ବ୍ୟକ୍ତିଗତ
ପ୍ରେମର ଶବ—ଶୋଭାଯାତ୍ରା ,
ତାହା ନୁହେଁ ଜୟ ଜୟକାର
କେଉଁ ପୁରୁଷର ଅସମାପ୍ତ ଇଚ୍ଛା ;

ଏଠି ଯଦି ଅର୍ଥ ଆଉ କ୍ଷମତାର
ଲସ୍କର ବଳରେ ଶୋଷିନିଏ ନାରୀର ରକ୍ତକୁ
ଅସୁର ମାୟାରେ ଗଢ଼ି ରାତାରାତି ସୁଦୃଶ୍ୟ
ଅଶୋକ ବନ ; ତେବେ ଏପରି
କି ପାପ ମୁଁ କରି ଜନ୍ମ ନେଲି ଯେ ମୋ
ସ୍ନାୟୁର ଦୀର୍ଘଶ୍ୱାସ ଯା' ପ୍ରେମର ଜଠରାଗ୍ନିରୁ
ଆସିଛି ଉତୁରି ପୃଥିବୀକୁ ଶାଂତ-ସମାହିତ କରି—;
ଅଥଚ କି ହଟଗୋଳ—;
ତ୍ରିମଂଡଳ ହୁଏ ପ୍ରକଂପିତ ସତେ ବା
ଏକ ଆଗ୍ନେୟଗିରି ଏତେଦିନେ ଆସୁଛି
ବିଦାରି ଲୋକଂକ ନିର୍ମୋକ ନିଦକୁ ଏବଂ
ଝାଉଁଳି ପଡ଼ଂତି ଅକାଳରେ ଏ ଦେଶର ସବୁ ଫୁଲଗଛ ।।

କି ଯଂତ୍ରଣା ବୁଲେ ଦୁଃଖୀ ରାଜହଂସ ପରି
ଗୋଟିଏ ମନର ପ୍ରେମରେ ଯାହାର ବିକ୍ଷତ ହାତ
ଝୁଲୁଥାଏ ପ୍ରଲୁବ୍ଧ ଅଂଧାରେ ପାଇବାକୁ
ଅନ୍ୟ ଅମଳିନ ହାତର ମୁକ୍ତ ସାତ୍ୟୟକୁ ।

'ପୃଥିବୀରେ କିଛି ନୁହଁ ସ୍ଥିର'—, ଏଇ ଆଶ୍ୱାସନାର
ନିମ୍ନସ୍ରୋତରେ ଯେତେଥର ମୁଁ ରକ୍ଷା କରିଛି

ମୋର ଆଶାପ୍ରଦ ଗୋଡ଼ର ଦଶଟି ଆଂଗୁଠି
ଯା' ଚଲାଇନେବ ନେଇ ମୋତେ ଏବଂ ମୋ'ପରି
ଅନେକ ହତଭାଗ୍ୟ ପୁରୁଷମାନଂକୁ—; କିଂତୁ
ଏ କ'ଣ ? ସେଠାରେ କାହାର ରକ୍ତ
ଠିଆହୁଏ ପଥ ଅବରୋଧ କରି ।।

ତା ୨୦-୧୨-୭୪



।। ଅଣତିରିଶି ।। ବୃତ୍ତ

# କାରା-ପ୍ରବେଶ



'ତୁ ତୋତେ ନିଜେ ରକ୍ଷା କର
ମୁଁ ଛାର ମନୁଷ୍ୟ ମାତର ।।'—ଭାଗବତ ।

ଅନ୍ୟ ଲୋକଂକ କଥା ଦୂରେ ଥାଉ
ନିଜେ ତ ଧରିଲ ତାଂକୁ ମସ୍ତକ ଉପରେ
ତଥାପି ରହସ୍ୟ ଦେଖ ସେ ଡରୁଛି ସାମାନ୍ୟ
ନଈକୁ—; ସେ ଡରୁଛି ପିଲା ଭଳି ପାଣି ଗର୍ଜନକୁ ।

ସେ କେଉଁ ଜଳାତଂକ ମନର ଭୟ ଯିଏ ହତାଦର
କରେ ଭୟଶୂନ୍ୟ, ନିରାପଦ ଭାଗ୍ୟକୁ ନିଜର ;
ବସୁଦେବ ; ଏ ତୁମର ବଦାନ୍ୟତା ଭିନ୍ନ ସମନ୍ୱର
ଏ ତୁମର ରିକ୍ତ ଇତିହାସ ଓ ଯେଉଁ ଅଂଧକାର
କାରା-କକ୍ଷ ଛାଡ଼ିଗଲ ପୁତ୍ରର ଐଶ୍ୱର୍ଯ୍ୟ ନେଇ
ପ୍ରତିଶୋଧ—ପରିପୂର୍ଣ୍ଣ ବିସ୍ତାରିତ ନିର୍ମଳ ଆଖିରେ ;
ତେଣୁ ତୁମେ ମୃତ୍ୟୁକୁ ଉଠାଇନେଲ ଆପଣା ଶିରରେ
ଅଥଚ ଅଥର୍ବ ଶୀଥିଳ ବାହୁ ଥରିଲାନି ଏପରିକି
ତୁମ ଅଲକ୍ଷ୍ୟରେ ଓ ଭୟ କାହିଁ ଛୁଇଁଲାନି ଅଂଗୁଳି ଟିପକୁ ।।

ତୁମେ ସେଇ ଲୋକ, ତୁମେ ସେଇ ଧ୍ୟାନମଗ୍ନ ବିତ୍ରସ୍ତ ଜନକ
ପୁତ୍ରର ଗାଂଭୀର୍ଯ୍ୟ ନେଇ ମୁହାଁମୁହିଁ ଠିଆ ହେଲ
ମଥୁରାର ରାଜସିକ ଅଂଧାରରେ ଉଗ୍ରସେନ ନଜରକୁ
ଭ୍ରୂକ୍ଷେପ ନ କରି ଏବଂ ତୁମେ ଭଲଭାବେ ଜାଣ
ଯେ ଉଗ୍ରସେନ ଦିନରେ ପାଳଇ ପ୍ରଜା, ରାତିରେ ପ୍ରହରୀ
ସେ ମଧ୍ୟ ପୁତ୍ରର ଦାସ, ସେ ମଧ୍ୟ ଓଳିଏ ଭିକାରୀ ।

ସମୁଦ୍ର ପହଁରି ଯିବା ତା' ପକ୍ଷରେ ଆହୁରି
ସହଜ କାମ ଯେ ସହିଛି କଂସ-କାରବାସ,
ଯେଉଁଠି ଆକାଶ ନାହିଁ ଏଭଳି କି ନିଦରେ
ବି ନୁହଁ—; ଯେଉଁଠି ଦୀର୍ଘଶ୍ୱାସ ମୃତ୍ୟୁରେ ବିଲୀନ
ଓ ବୁଲି ବୁଲି ଫେରିଯାଏ ସାପ ପରି ଛାତି ଭିତରକୁ ;
ମୃତ୍ୟୁ ବି ଉଦାସ ଦିଶେ କ୍ଳାନ୍ତ, ଅବସନ୍ନ ;
ଯେଉଁଠି ପ୍ରତାପୀ ଲୋକ ମଧ୍ୟ ଦିଶନ୍ତି ମଳିନ
ନୂଆ ଲଣ୍ଠନ କାଚରେ ମଧ୍ୟ କଳାପଡ଼େ
ସାବଧାନ ହେବା ପରେ—; ଏ ସବୁ
ଗତାନୁଗତିକ କଥା ଆମ ପରି ସାଧାରଣ
ଜୀବନରେ । କିନ୍ତୁ ତୁମେ ସେଇ ଲୋକ
ଯା'ର ମସ୍ତକ ଉପରେ ଶୋଭାପାଏ ଇନ୍ଦ୍ରଙ୍କର
ତମ୍ବା ପାତ୍ର , ସପ୍ତଫେଣାର ଶୀତଳ ଛାୟା ;
ବିଦ୍ୟୁତ ଦେଖାଏ ପଥ , ଯୋଗନିଦ୍ରାରେ ଦୁର୍ଦ୍ଦାନ୍ତ
ଅସୁର ବି ଚୈତନ୍ୟରହିତ , ନିଃଶବ୍ଦ ମେଘର ଗତି
ଓ ନକ୍ଷତ୍ରର ସୀମିତ ଆଲୋକ ମଧ୍ୟ
ମେଘଲୋକେ ଅନ୍ତର୍ହିତ—; ପର୍ବତରେ ପଡ଼େ ନାହିଁ
ପ୍ରତିବେଶୀ ଅରଣ୍ୟର ଭୟାନକ ଉନ୍ମାଦ ବିଳାସୀ
ରୂପର ଅପଘାତ ଛାୟା ; ସବୁ ସ୍ତବ୍ଧ ଯିଏ କଲା
ସେ ତୁମର ମନର ରକ୍ତ , ସେ ତୁମର ବିଗତ ବହୁଜୀବନର
ତପସ୍ୟାର ଧନ ; ସେ ତୁମର ଏ ଜନ୍ମର ପୁତ୍ର
ବସିଅଛି କିଛି ନ ଜାଣିବା ପରି ଅନାଥ ଶିଶୁ
ସମ ରାଜଦଣ୍ଡ ଭୋଗିଥିବା ସୁସ୍ଥିର ଆସାମୀ ପିତାର
କପାଳ ଉପରେ । ଏହା ହିଁ ମଣିଷର ଭାଗ୍ୟ ।।

କେତେ ବା ସମୟ ଆଉ ଲାଗିଥିବ ବିଷ୍ଣୁପଥ
ଡେଇଁଯିବା ପାଇଁ ଚୈତନ୍ୟର ଦିବ୍ୟ ଆଲୋକରେ ;
ସମୟର ଶୂନ୍ୟବାଣୀ ସତ୍ତ୍ୱେ ତୁମର ପିତୃତ୍ୱ ହେଲା ମୋହଗ୍ରସ୍ତ
ପୃଥକ କେଉଁ ଶୂନ୍ୟର ଡାକରେ ଓ ନଈର ଛାତିରେ
ଦେଖି ମେଘର ତାଣ୍ଡବ ରୂପ ନିଜେ ପୁଣି ଫେରିଗଲ
ପୁତ୍ର ଜନ୍ମ ଆଗର ମନକୁ ।

ଆମେ ଭଲ ଭାବେ ଜାଣୁ ସେ ନଈ ତ
ନୂଆ ନୁହଁ ଓ ତାହାର ପାଣି ଆଉ କୂଳର
ଅତଡ଼ା—; ସବୁ ତୁମ ଦେହସୁହା କଥା ,
ତଥାପି କେଉଁ ମନର ମୋହ ବାଧା ଦେଲା
ପାଣିକୁ ଛୁଇଁବା ପାଇଁ କିମ୍ବା ସେ ରାତିରେ
ତୁମେ ପଢୁଥିଲ ନୀଳଜଳର ନୂତନ ଭୂଗୋଳ ।।

।। ଏକତିରିଶି ।। ବୃତ୍ତ

ଏ ଯଦି ତୁମର ଦଶା ଯା'ର
ଅହଂକାର ଖସିଗଲା ନିରାଶ୍ରୟ
କୁଟାଖିଅ ପରି ମାଣିକକୁ ଧରିବାଂଧି
ଆପଣାର ସ୍ନେହର ଦୁର୍ଗରେ ;
ସେ ଚାହିଁଲା ସମର୍ପଣ ପିତୃତ୍ୱର
ସୁବର୍ଣ୍ଣ ଅମ୍ବର ; ସେ ଚାହିଁଲା
ଅହଂକାର ବଂଦୀ ହେଉ ମୁମୂର୍ଷୁର
ଦୃଷ୍ଟି ପରି କଂସର ସୁରକ୍ଷିତ ଘରେ ।
ତେଣୁ ତା' ଇଚ୍ଛାରେ ଯେ ତେଇଁଲା
ପାଣିକୁ ନ ଛୁଇଁ ଓ ସକାଳରେ
ଶୁଣାଯାଏ ବଇଁଶୀର ଶେଷ ଅଭିସାର ,
ସକାଳରେ ଦସ୍ୟୁଦଳ ସମ ମେଘ ଲୁଚିଲେ
କେଉଁଠି ସତର୍କରେ ପୋଛିଦେଇ ସେମାନଂକ
ପାଦଚିହ୍ନ ଓ ଆକାଶ ସୁନା ପିଲା ପରି
ଚାହିଁଅଛି ସତେ ଯେମିତି ସେ ଜାଣେନି
ଗତକାଲି ରାତିରେ ବା କଅଣ ଘଟିଛି ।।

ଘଂଟା ଘଂଟା ନାବର ଉନ୍ମାଦନା ପରେ
କ୍ଳାଂତ ମୟୂରଦଳ ଭଳି ନଈ ଡାକୁଛି
ସୋହାଗରେ ଆସ ତୀରବାସୀ, ଆସ ବସୁଦେବ,
ଆସ ଦେବକୀ, ଯଶୋଦା, ଆସ ପଶୁପକ୍ଷୀ ;
ରାତିର ଦୁଃସ୍ୱପ୍ନ ଯେତ ଧୋଇ ନିଅ
ରାତି-ଲୁଗା ଧୋଇଦେବା ପରି ଓ
ଆକାଶ କିପରି ଦେଖ ମୋ ଛାତିକୁ ଧରିଛି ଜାବୋଡ଼ି
ମୁଁ କରିଛି କ୍ଷମା ତାକୁ
ଭୁଲିଛି ତା' ହାତର ବର୍ବର ଯନ୍ତ୍ରଣା ;

କାଲି ସଂଧ୍ୟା ପୂର୍ବେ ଯାହାଥିଲା ଏଠି
ଏକ ଥୁଂଟା ଗଛ ସେ ଆଜି ଅବନତ
କଦଂବ ଭାରରେ , ସମର୍ପଣ ନିଶାରେ ବିହ୍ୱଳର
ଫୁଲଂକର ଛୋଟ ଦେହ , ଏ ବେଳେ
ଶୁଅନା କେହି ରଘୁ ଅରକ୍ଷିତ ;
ସଜାଗ ଆଖିରେ ଛାଟି ଧୂଳିମାଡ଼
ସେ ଯାଇଛି ଖସି ଫାଂକା କରି
ଲୁହାର ଯାଉଁଳି କବାଟ ; ସେ ଯାଇଛି
ଲୁଗା ଫିଂଗି ବର୍ଷାର ହାତରେ;
ସେ ଯାଇଛି ଥରି ଥରି

ଅଭିଭାବକହୀନ ଛାତ୍ର ପରି ସ୍କୁଲଘର ଛାଡ଼ି ;
ନିଶ୍ଚୟ ଆସିବ ଫେରି ମହୋତ୍ସବ ଦିନ
ଆମେ ଯେବେ ମେଘ ଭଳି ରୁହିବୁ ଉନ୍ମାଦ
ହୋଇ—; ସେ ନିଜକୁ ରକ୍ଷା କରି
ଆସିବ ହିଁ ଫେରି ।

ଏଇ ଯା' ସମୟ ଲାଗିବ
ଏତିକି ଅପେକ୍ଷା କର, ବସୁଦେବ ।।

ତା ୧୯-୯-୭୪



# ବନବାସ



୧ ।।

ଥାଉ ପଛେ ଅଭିଷେକ
ଥାଉ ପଛେ ମଣି ମୁକ୍ତାର ଗାଲିଚା ,
ଥାଉ ତୁମ ଅଂଗର ସାମ୍ରାଜ୍ୟ
ଅବିଭାଜ୍ୟ ;
ମୁଁ ଚାଲିଲି ମାରିବାକୁ ବିଲଂକାରବଣ
କାହାର କ୍ଷମତା ଅଛି ଲେଉଟାଇ ନେଉ ଆସି ମୋ ପ୍ରତିଜ୍ଞା ବାଣ ।

ରମଣୀର ରୂପ ପରି
ଯଦି ତା'ର ଅହଂକାର ହୁଅଂତା ସୁଂଦର ,
ତେବେ ଏତେ ଦୁଃଖ କ'ଣ
ତେବେ ତୁମ ସତୀତ୍ୱର ପରାକାଷ୍ଠା! ଛାଇଥାଂତା ଅଯୋଧ୍ୟା ନଗର ।।

ତଥାପି ଧୋବଣୀ ମୁହେଁ
ତୁମ ଗ୍ଲାନିର ନେତ ଉଡ଼େ ଫରଫର
ରଖ କି ତାହାର ଖବର
କାହା ପାଇଁ ବନବାସ
ଏ ବକଳ-ବାସ ;
ତୁମର ଉଦ୍‌ବିଘ୍ନ ମନ
ଛଳନାର ଏକ ସୁରମ୍ୟ ଉପବନ ।

ଲକ୍ଷ୍ମଣର ଦୋଷ ବା କ'ଣ ?
ସେ କ'ଣ କାଟି ନାଇଁ
ତିନୋଟି ସତର୍କ ଗାର
ତା' ଅକ୍ଷୟ ତୂଣୀର ତୀରରେ ??

।। ଚଉତିରିଶି ।। ବୃତ୍ତ

ରାବଣର ଦୋଷ ବା କେଉଁଠି ?
ଭିକ୍ଷୁକର ବେଶ କ'ଣ ଚାପି ପାରେ ରାଜାଂକ ଦେହର ଗଂଧ ,
କସ୍ତୁରୀ ଚ'ଦନ କ'ଣ ଲୁଚାଇ ପାରେ
ସେଇ ଦୃଷ୍ଟି ଯାହା ଥିଲା କାମନାରେ ଅଂଧ ;
ତା' ହାତର ସ୍ପର୍ଶ କ'ଣ ନ ଥିଲା ଉଦ୍‌ଭିନ୍ନ
ତା' ଆଶ୍ଲେଷର ଅପଚେଷ୍ଟା ତମ ସ୍ୱଳ୍ପ ବସ୍ତ୍ର କରିଥିବ ଛିନ୍ନ ;
ସବୁ ଜାଣି , ଲକ୍ଷ୍ମଣକୁ କରିଲ ସଂଦେହ
ସୁନାର ହରିଣ ପଛ ଏ ସଂସାରେ ଏକ ଅସଂଭବ ମୋହ ।।

ତୁମର ଯୁକ୍ତି
ରାବଣ ଛୁଇଁନି ତୁମର ଅଂଗ
ସେ ନେଇଛି ତୁମ ଛାଇର ପ୍ରତିବିଂବ ।

ମୋର ପ୍ରଶ୍ନ
କେଉଁ ମଣିଷର ଛାଇ ତା ଦେହରୁ ଭିନ୍ନ
ଏପରିକି ମାୟା ମୃଗର ଛାଇ କ'ଣ ନ ଥିଲା ଉତ୍କୀର୍ଣ୍ଣ
ଚଂଚଳର ବୃକ୍ଷ ଗହଣରେ କିଂବା ପାର୍ଶ୍ୱବର୍ତ୍ତୀ ପୁଷ୍କରିଣୀ ଜଳେ ;
ଠିଆ ହେବାର ଭଂଗୀରେ ଛାଇର ଚେହେରା ବେବାକ୍ ବଦଳେ ।।

ଛଳନାର ବି ଏକ ଛାଇ ଅଛି
ଯାହା ସ୍ପଷ୍ଟ କରିଦିଏ ମଣିଷର ଭିତର ମଣିଷ ,
ସେଥିପାଇଁ ଅନ୍ୟ ଆଖିର ଲୁହ କ'ଣ
ସବୁବେଳେ ଉଦ୍ରେକ କରେ ଅଶ୍ରୁ ରେଖାର ପରଶ ;
ପୁନଶ୍ଚ
ମନର ଲୁହ କ'ଣ ଦେଖାଯାଏ ସଚରାଚର
ଅପର ମନର ଲୁହରେ କ'ଣ ମିଳେ ଏହାର ଉତ୍ତର ।

ତେଣୁ କାହିଁ କହୁ ଅଛ
ସେ ଧରିଲା ତୁମ ବାହୁ ଓ
ବଳାତ୍କାରେ ଟାଣି ନେଲା ଅଦୂରସ୍ଥ ବିମାନ ଗର୍ଭକୁ ;
ସବୁ କ'ଣ ପୁରୁଷର ଚରିତ୍ର ସ୍ଖଳନ
ନାରୀ ଖାଲି ମୌନ ସାକ୍ଷୀ ; ସ୍ପଂଦନହୀନ ;
ଯୁଗାଂତର ସେ କହିଛି ନିଜକୁ ନିର୍ଦ୍ଦୋଷ ଓ ଉତ୍ତାପ ରହିତ
କେବଳ ପୁରୁଷ ଯାହା ତା' ବିବରକୁ କରେ ନଖାଘାତ ;
ତେଣୁ ଭାଗ୍ୟ ଦୋଷ ନାମେ ତୁମେ ସ୍ପର୍ଶ କରିଥିଲ ରାବଣର ବିକ୍ରମ ବକ୍ଷକୁ ?

।। ପଞ୍ଚତିରିଶି ।। ବୃତ୍ତ

।। ୨ ।।

ସେଥିପାଇଁ
ଦିନ କୁହ
ରାତି କୁହ ,
ଘର ଘର ବୁଲି ତୁମେ କହୁଛ ଲୋକଙ୍କୁ
ଏପରିକି ଅସହାୟ ପଥଚାରୀ ଗୁପ୍ତ ସନ୍ୟାସୀକୁ
ତୁମର ସର୍ବସ୍ୱ ନେବାର ଲୋଭ ଲୁଚାଇ ମୋ କବିତା ଭିତରେ
ମୁଁ ଦାନବ ଆସିଥିଲି ଛପି ଛପି ଅକସ୍ମାତ୍ ଚିତ୍ରକୂଟ ଦ୍ୱାରେ ।।



।। ଛତିଶି ।। ବୃତ୍ତ

# ପବନର ବି କାନ ଅଛି



କାହାକୁ ମାଗୁଚ କ୍ଷମା
ଆଜି ଭଳି ପବିତ୍ର ଅପରାହ୍ନ ଛାୟାମଂଡଳରେ
ଆଗରେ ଟ୍ରାଫିକ ବନ୍ଦ , ପଛରେ ରୁଧିରାକ୍ତ ଅତୀତ ବିଦାରେ ;
ତା'ର ବିଷାକ୍ତ ନଖ କରେ ତଛନଛ ;
ଯାହାକୁ ମାଗୁଚ କ୍ଷମା ତା' କଂକାଳ ଝୁଲେ
ହିଂସାର କଂଟାରେ ଚିରି ତା'ର ନୀଳ ଆଖି , ଲୋହିତ ଅଧର ,
ମଣିଷ ମାଂସ ଲୋଭୀ ପକ୍ଷୀ ମଧ୍ୟ ନଇଁଗଲା ଲଜ୍ୟାରେ ସେ ବେଳେ
ରତ୍ନଭଂଡାର ପରି ମୃତ୍ୟୁକୁ ସେ ବୋହିଲା ତା'ର ହାଡୁଆ କାଂଧର
ପୂର୍ଣ୍ଣ ଫାଲ୍‌ଗୁନରେ । ସେ ହାରି ବି ହାରି ନି ଅଥଚ ॥

ଜାଣିବାକୁ ଚାହିଁଛ
କେମିତି ଅଛି ମୁଁ
ତୁମ ଭଂଗା-ରୁଜା ଉଆସରେ ;
କାହିଁ ପବନର କ'ଣ କାନ ନାହିଁ
ଆଖି ନାହିଁ—, ତା' ମୁହଁରେ କ'ଣ
ସାଇଁ ସାଇଁ ନିରାଭରଣ ଆର୍ତ୍ତନାଦ ନାହିଁ ;
ସେ କହି ପାରିଥାଂତା ସୁଖର ଦିନ କେଡ଼େ ଚଂଚଳ
ଖସି ପଡ଼େ ଓ କାମନାର ମୁହୂର୍ତ୍ତମାନେ ଜଣାଯାଂତି
କେଉଁ ପର୍ବତ ଗୁହାର ଆଦିମ ଅଂଧାର ପରି ସ୍ୱପ୍ନହୀନ ।

ମୁଁ ଆଜି ଏକ ପୁରାତନ ଅଭିନେତା ଯାହାର
ଦର୍ଶକ ଖୋଜେ ସକାଳରେ ନୂଆଖବର
ଋତିରେ ଭିନ୍ନ ଆଲୋକର ତର ;
ସେମାନେ ଜାଣଂତି ନାହିଁ ଯେ ତୁମେ
ମୋତେ ଶୁଆଇଛ ଯେଉଁ ସ୍ଥାନେ ପୋଷା ପାର
ଭଳି ଗୀତ ଗାଇ ଗୁମୁରୁ ଗୁମୁରୁ—; ତାହା ଏକ

ସମାଧି ପୀଠ ଓ ମୋର ଆସନ ଛୁଇଁ ଦୁଇଟି କବର
ହେବ ଅବା ଶତାବ୍ଦୀ ଆଗର କେଉଁ ମହାପୁରୁଷର
କିଂବା କେଉଁ ସ୍ଥାନୀୟ ଶହୀଦ୍-ସ୍ମୃତିର । କିଛି କିଛି
ମୁହୂର୍ତ୍ତ ଆସେ ସୁଖରେ ବାଧୋଇ ଓ ପରେ ଗଡ଼ିଯାଏ
ପରାଜିତ ସମ୍ରାଟଂକ ସମ୍ମାନିତ ମୁକ୍ତାର ମୁକୁଟପରି
ଭଗ୍ନ କେଉଁ ରାଜ-ପ୍ରସାଦରେ ଅବସନ୍ନ ତୃତୀୟ ଯାମରେ ;
ପ୍ରେମ ଏକ ରାଜ-ପ୍ରାସାଦ—; ମାଟି ଅବା ମାର୍ବଲରେ
ହେଉ ଓ ମୋ ଛାଇର ଆଲୋକ ଏବେ ବି
ଦିଶୁଛି ନିଖୁଣ ସେଇ ପଥର ଚଟାଣ ପରେ ଯେଉଁଠି
ତୁମର ଦେହ ଦିନେ ଜଳୁଥିଲା ତା'ର ନିଜ ଆଲୁଅରେ ।।

ଏ ସବୁ ଲେଖିବା କଥା ମନା ଅଛି ମୋତେ
ନିୟମର ସୁରକ୍ଷା ପାଇଁ ପିଂଜରାକୁ ଘର ଭାବି
ଧରି ନେବା ଭଲ—; ନ ହେଲେ ଜୀବନ କ'ଣ ?
ନ ହେଲେ ଦୁଃଖର ରାତି ଖୁବ୍ ଶୀଘ୍ର ପାହିଯିବ
ଲୋକଂକ ସଂଭାବିତ ସକାଳ ପୂର୍ବରୁ । ସେମାନଂକୁ
ଲାଜ ନାଇଁ କଳଂକ ଦେଖିବା ସତ୍ତ୍ୱେ ସେମାନେ ବି
ଚାହିଁଥାଂତି ଚଂଦ୍ରର ମୁହଁକୁ । ମୁଁ ସେହି ଜହ୍ନ
ଯେ କେବେ ଆସିବ ନାଇଁ ଫୁଲର ଉନ୍ମାଦ ଅବସ୍ଥା
ଦେଖି ଏବଂ ତୁମେ ସେଇ ଫୁଲ ଯେ ଛୁଇଁ ପାରିବ
ନାଇଁ ଜହ୍ନର ହେମାଳ କାଂଧକୁ । ତଥାପି ପ୍ରତୀକ୍ଷା ଟାଳେ
ଅବିରାମ ଦୁହିଁଙ୍କ ପକ୍ଷରେ ଓ ଦୁହେଁ ଭାବୁଥାଂତି
ଏଇ ପରା ମିଶିଗଲେ ପରସ୍ପର ଝୁଲଣ ବେଦୀରେ ।।

ଲିଭିଗଲା ସେ ଯଜ୍ଞର ଅନଳ
ହଜିଗଲା ତାହାର ରକ୍ତାଭ ଧାସ ;
ଏହା ବା କି ଆଶ୍ଚର୍ଯ୍ୟ କଥା
ଯେ ବର୍ତ୍ତମାନର ଅବଶିଷ୍ଟ କେବଳ ପାଉଁଶ ।।



# ଅନଭିକ୍ରମଣ



ବଂଦର ଦେଖିବା ଲୋଭରେ
ଯେଉଁମାନେ ଏତେକାଳ ଡେଉଁଥିଲେ ବାଲିର ପାହାଡ଼
ପାଦରୁ ଝରାଇ ଲହୁ
ପଲାଶ-ଲୋଚନ ଦେଲା ଲକ୍ଷ ବିଂଦୁ ଲୁହ ,
ସେମାନେ ପାଇଲେ କ'ଣ ; ଆଜି ତାଂକ ରକ୍ତ-ମାଂସ-ହାଡ଼
ସମସ୍ତ ଯାଇଛି ଉଡ଼ି
କିଏ ଧୋଇନେଲା ତାଂକ ପ୍ରାଣର କଉଡ଼ି ।

ମୁକ୍ତା ପାଇବା ବାହ୍ନାରେ
ଯେଉଁମାନେ ଏତେକାଳ ଖୋଜୁଥିଲେ ସ୍ୱତଂତ୍ର ଶାମୁକାର ଛାତି
ସେମାନଂକ ଘର୍ମାକ୍ତ କପାଳରେ ଲିଖା
ଆଉ କାହିଁ ଯାଉନାହିଁ ଦେଖା ,
ବିକ୍ଷତ ନଖରୁ ଖସେ ତପସ୍ୟାର ଅକୃପଣ ପ୍ରୀତି ।।

ଯୁଗାବ୍ଦର ଅନିର୍ମିତ ପୋଲ ଡେଇଁ
ମୁଁ ଖୋଜୁଚି ସେ ବଂଦର ଓ ସେ ମଣିଷମାନଂକୁ
ମୁଁ ଖୋଜୁଚି ସେ ଶାମୁକା ଓ ମୁକ୍ତା ପରି ପ୍ରତିଭାତ ଲୁହମାନଂକୁ ,
କିଏ ଜାଣେ ଉକ୍ତ ବଂଦର କେଉଁଠାରେ
ତାହା ଆଦୌ ଅଛି କିଂବା ଆଦୌ ନ ଥିଲା ବା ନାହିଁ ।

ମୁଁ ଚାହିଁଲି ସେ ନିରୀହ ମାଛମାନଂକୁ ଯିଏ
ନିର୍ବିଘ୍ନରେ ଖାଉଥିଲେ କୂଳର ଶିଉଳୀ ଓ ସେମାନେ
ଏପରି ଚାହିଁଲେ ତରଟି ଯେପରି ଦେଖୁଛଂତି କିଛି ଇଂଦ୍ରଜାଲ
ଓ ରୂପାର ଲାଂଜ ବୁଲାଇ ନେଇ ଲେଉଟିଲେ ଦଳବାଂଧି ନିଜ ଅଂତଃପୁର ।

।। ଅଣଚାଳିଶି ।। ବୃତ୍ତ

ସେ କେଉଁ ନାବିକ ଧାଏଁ ସ୍ରୋତେ ଲକ୍ଷ୍ୟ କରି
ପିନ୍ଧି ମୃତ୍ୟୁର ପୋଷାକ ଓ ଆର୍ତ୍ତକଂଠେ କହିବାର
ଭଂଗୀ ଫୁଟି ଉଠେ ଯା'ର ଅର୍ଥ 'ତୁମେ ଏଠୁଁ ପଳାଅ ବନ୍ଧନ
ଏଠାରେ ବଂଦର ନାହିଁ ଅଥଚ ଶୁଣାଯାଏ ମିଛ ଜାହାଜର
ଶୂନ୍ୟ ଡାକ ଏବଂ ମୁକ୍ତା ପାଇବା କଥା ନିଛକ୍ ଭୋଜବାଜି ଖେଳ' ।।

ତଥାପି ଏତେ ମଣିଷଙ୍କ ପାଦଚିହ୍ନ ଏଠାରେ କିପରି
ଆହୁରି ଅବାକ୍ ଲାଗେ ମୋ ପୂର୍ବପୁରୁଷଙ୍କ ଧୂଳିହୀନ
ଛାଇ ଏଠାକୁ ଆସିଲେ କିଭଳି ଓ ସେମାନଙ୍କ ଆସକ୍ତ
ଚାହାଣୀ ମୋତେ ତୋଳିଧରେ ବଳି ପାଇଁ ଉପଯୁକ୍ତ
ଛେଳି ବେକ ପରି ଓ ମୋର ଉତ୍ତର ପୁରୁଷ କହେ
'ଏ ଭଂଡକୁ ଉଲଗ୍ନ କର ଏବଂ ବାଢ୍ୟାପ୍ତ କର
ଏହାର ଯେତେ ଜଡ଼ି-ବୁଟିର କୋଥଳୀ
ରାଜ୍ୟ-ସୀମା ଦିଅ ପାର କରି ।'

ଧଳା ବଣ ପାର ଭଳି ମୋର ନିଦ ଗଲା ହୁଡ଼ି
ଅଣପଖଳା ଅପରାହ୍ନରେ ଥୁକୁଲୁ ପକାଇ ଗଲା ଯେ
ପୁଅ, 'ହେଇ ଆସିଲି ଫେରି' କହି, ନ ଆସିଲା ଫେରି ।।

କେଉଁ ବଂଦରରେ ସିଏ ପହଂଚିବ ଯାଇ
କେଉଁ ମୁକ୍ତାର ମାଳ ତା'ର ଗଳାରେ ଶୋଭଇ ,
କିଏ ଜାଣେ ସେ ଏବେ କାହାର ସ୍ତନ ଶୋଷି
କାହାକୁ ଆଣିଦେବ ଶେଷ ନିଦ କିଂବା କେଉଁ
ମାଳିଆଣୀ ଘରେ ବେକରେ ଲଗାଇ ପଘା ମାରୁଥିବ ହାଇ ।।



# ଅପହରଣ

୬

କାହିଁକି ଭାବୁଚ ଅବା
ଆମର ଏ ଶେଷ ଦେଖା ଏଇ ଜୀବନରେ,
କାହିଁକି କରୁଚ ଦୁଃଖ
ଆକାଶ କ'ଣ ଭାଙ୍ଗି ପଡ଼ିବ ଏତେ ଶୀଘ୍ର
ଆମ ଛୋଟ ମଥାନରେ;
କି ବା ଅଧିକ ପ୍ରଳୟ ଆଉ ଘଟିପାରେ
ଯଦି ଦିନର ଆଲୋକ ଲିଭିଯାଏ ଠିକ୍ ମଧ୍ୟାହ୍ନରେ;
ତଥାପି ଭାବନା ତୁମେ
ଆମର ପାଦର ରକ୍ତ ଶୁଖିପିବ ବାଟର ଉପରେ ।

ସ୍ନେହର ରକ୍ତ ନୁହେଁ ଏତେ ଫିକା ଓ ଏତେ ତରଳ
ସେ ଟଳାଏ ସିଂହାସନ, ସେ ବଜାଏ ମୃତ୍ୟୁର ମହୁରୀ;
ଭୂମିକଂପ ପରେ ମଧ୍ୟ ଆଉ ଏକ ନୂଆ ମାଟି
ଚାରିଆଡ଼େ ପଡ଼ଇ ବିଛୁଡ଼ି ଓ ତା' ଅଙ୍ଗେ ଅଙ୍ଗେ
ପୁରାତନ ମାଟିର ନିଃଶ୍ୱାସ, ପୁରାତନ ଜଳର ଭଉଁରୀ ।।

କେଉଁ ପ୍ରେମ ଶେଷ ନୁହେଁ
ଶେଷର ଆରମ୍ଭ ସେଠି ଲେଖାହୁଏ ଅଜ୍ଞାତ ଧାରରେ,
ତା' ହେଲେ ନାୟକର ମୃତ୍ୟୁ ବା ଅପମୃତ୍ୟୁ ପରେ ପରେ
ନାଟକର ହୋଇଥାନ୍ତା ଶେଷ ଓ ଦର୍ଶକ ଆଉ କେବେ
ଦେଖନ୍ତେ ନି କୌଣସି ନାଟକ ରେମଗତ୍ୟ ଶୋଇଯିବା ବେଳେ ।

।। ଏକଚାଳିଶି ।। ବୃଢ଼

ଧରିନିଅ ଏ ବାୟୁମଣ୍ଡଳ ଆଉ ସଫା ହେବ ନାହିଁ
ହୁଏତ ଆତୁରି କୁହୁଡ଼ି ଆସି ଦିନକୁ କରିବେ ରାତି,
ଯେତେବେଳେ ଆମକୁ କେହି ପାରିବେ ନି ଚିହ୍ନି ଓ
ଆମର ଆଲୋକ ସତ୍ତା ଅନ୍ୟ କେଉଁ ଆକାଶରେ
ତ୍ରେତାଯୁଗର ମହର୍ଷିଙ୍କ ନ ମରେ ହେବ ପୁଣ୍ୟଶ୍ଲୋକ ନକ୍ଷତ୍ର ବିଶେଷ;
ଉଂମାଦରେ ଲିଂ ଫାନ୍ଦ ଦେଇ ନବବଧୂ ଡାକୁଥିବ ତାପାଚାଳାରେ
ଅଦୂରସ୍ଥ ସମ୍ମୋହିତ ପୁରୁଷକୁ ~~ଓଳ~~ ଏବଂ ନାଡ଼ିରେ ଆଉଜି
ସେ ଜଡ଼ିବ ଏକ ଦେହ, ଏଇ ଯେଉଁ ଦୁଇଟି ନକ୍ଷତ୍ର
ସେ ଦୁଇଙ୍କୁ ଆମ ପ୍ରେମର କୁଣ୍ଠିତ ସାକ୍ଷୀ ଓ ଆମ ଜୀବନ
ହେଉ ତାଙ୍କ ପରି ନୀଳ ଜ୍ୟୋତିର ସ୍ପର୍ଦ୍ଧାହୀନ ସ୍ରୋତ ।

ଏ ପାଇଁ ପ୍ରସ୍ତୁତ ହୁଅ
ଯେତେ ପାର ନିଜ ଭିତରେ ନିଜକୁ ବିସ୍ତାର ଦିଅ,
ତୁମ ଦାମିକା ଶରୀରର ବକ୍ଷସ୍ତ ମଧ୍ୟ ଆଉ ନ ରହିଲେ ବନ୍ଧା
ଶେଫାଳୀ ଫୁଲର ମାୟା ଖସିବ ଅଳନ୍ଦରେ ଓ ଯେଉଁଠାରେ ଦେଖିବେ ଲୋକ
ଦୁଇଟି ସୀମିତ ଶରୀର ପରିବର୍ତ୍ତେ ଜନ୍ମୁଅଛି ଦୁଇଟି ଅନନ୍ୟ ଆଲୋକର

କ୍ୱଚିତ ଭାଗ୍ୟରେ ଘଟେ ମହା ସମୁଦ୍ର ସ୍ନାନ
ତେଣୁ କାହିଁ ଡରୁଅଛ ଆସି ଦଶାନନ
ଏ ଅଦୃଶ୍ୟ ନାଗପୁର ଗଣ୍ଡାଘରେ କରିବ ପ୍ରବେଶ
ଏବଂ ମାଗିବ ଭିକ୍ଷା ଚିରକାଳ ରକ୍ଷିତ ହେଉ ମୋହର ଯୌତୁକ ।



# ସାପଖେଳ



ଅଂଧ ହୋଇଯିବା ଭୟରେ
ମୁଁ କେବେ ନାସ୍ତାରିକାଂକୁ ଚାହେଁନି,
ତଥାପି ଆକାଶେ ଅକାଶେ ଉଠେ
ସେଇ ଛାୟାପଥ; କହୁଁ ତୁମେ କେହି ଅ'ଧ ତ ହୁଅନି ।

ମୋର ଗୋପନ କଥା କହେ ଆଜି
ଆଉ ବେଶି ଭଲପାଇ ପାରିଥାନ୍ତା ମୋହର ହୃଦୟ,
ବିଫଳତା ଭଗ୍ନରେ ଯିଏ ଆସିଛି ଓହରି
ସେ କେବଳ କହି ବୁଲେ ପ୍ରେମ ଆଦେଶ ପରାଜୟ;
ପ୍ରେମ ହିଁ ଈଶ୍ୱର—ଯିଏ ଜୟ କରିଅଛି ମରଣର ଭୟ ॥

ଯାହାଙ୍କୁ କହୁଚ ତୁମେ
ମୃତ ଚଂଦ୍ର
ମୃତ ଜ୍ୟୋସ୍ନା
ମୃତ ନକ୍ଷତ୍ରର ଭୂମି ଆଲିଙ୍ଗନ,
ଯେ ନୁହେଁ ହଜିଯିବା, ଲିଭିଯିବା ମୁହୂର୍ତ୍ତର ମନ;
ଯେଉଁ ଲୋକ,
ସମୁଦ୍ରର ଗର୍ଜନକୁ ସମୁଦ୍ର ଭାବିଛି
ଢେଉର ନୀଳ ଆକ୍ରୋଶ ଦେଖି ଲେଉଟି ଆସିଛି,
ସେ କ'ଣ ଜାଣିବ କହ ସମୁଦ୍ରର ମନ
ଓ ତା' ତଳର ଭୂମିକଂପ, 'ତା ଛାତିର ପ୍ରଶସ୍ତ କଂପନ ॥

॥ ଡେୟାଲିଶି ॥ ବୃଷ

ସାପକୁ ଖେଳାଇ କେଳା
କରିଥାଏ ଦର୍ଶକଙ୍କ ଚିତ୍ତ ବିନୋଦନ,
କିନ୍ତୁ ତା'ର ତାଂବୁଘରେ
ଖେଳୁଥାଏ ପଦ୍ମତୋଳା ଯାହା ଜୀବଂତ ମରଣ ।

ବାହାର ଲୋକ ଦେଖେ
ନାଗକେଶର ଫୁଲ ଦୋଳେ ବିନା ପବନରେ
ତା'ର ଚିତ୍ରିତ ଦେହେ ଭୟର ଛଇ ହଲେ ତୃଷାର୍ତ୍ତ ପ୍ରାଣରେ;
କିଂନ୍ତୁ କେଳାକୁ ମାଲୁମ ସିନା
ସାପର ହସ ଏବଂ ତା'ର ନିଶାଗ୍ରସ୍ତ ଚାହାଁଣୀର ଅର୍ଥ,

ତେଣୁ ମୋ କାଂଧରେ ଝୁଲେ
ନିର୍ଭୟରେ ବିପାକ ସାପରି ପେଡି
ପ୍ରେମକୁ କଏଦୀ କରି ପିନ୍ଧାଇଛି ବିସ୍ମୃତିର ବେଢ଼ି;

ତେଣୁ ମୁଁ ତ ଧନ୍ୱଂତରୀ
ଆସିଛି ଉତୁରି
କେତେ ଯେ ସମୁଦ୍ର ମଂଥନ କରି
ମୋ ଦୁଇ ହାତରେ ଦେଖେ ଜଳ ନିରାମୟ ଅମୃତର ପାତ୍ର ।।



# ବ୍ରହ୍ମାଣ୍ଡ



କେତେ ରାତି ?
ରାତି ଯେତେ ଅନ୍ଧ ଭ୍ରୂଣ ପଚାରନ୍ତି
ତୁହାଇ ତୁହାଇ,
ତା' ରୁଗ୍‌ଣ ମ ଆଜ କରୁଣ ନିଃଶ୍ୱାସରେ
ଜଠରର ଅନ୍ଧକାର ହୁଏ ଘନୀଭୂତ,
ସେ ଗଡ଼େ ମାଦଳ ପ୍ରାଏ
ବ୍ରହ୍ମାଂଡ କଳା ସମଗ୍ର ବି ହୁଏ;
ଓଁକାର ଓହ୍ଲାଇ ଆସେ ଧରି ସ କାରର ହାତ ।

ଭାଷାହୀନ ପ୍ରଶ୍ନର ଲହଡ଼ି
ମାସ ମାସ ଉଦରସ୍ଥ ନିକାଂଚନ ଛାତି
କେବେ ଯିବ ଧରି ଜ୍ୟୋତି ରୂପ,
କେବେ ଯେ ସକାଳ ପୁଷ୍ପି ଧରିଦେବ
ବୃନ୍ତ ତ୍ୟାଗୀ ଗେନ୍ଦ୍ରା ବଢ଼ ପୁଅପରି ନିଜ ମନେ
ଦାଂଡ ଦୁଆରରେ, ଦେହରେ ଝଲସି ଥିବ ସୂର୍ଯ୍ୟର ତାପ;
ଯେତେବେଳେ ଶୋକାତୁର ଜନନୀର ଡାକ
ରାତ୍ରିଶେଷ ସ୍ୱପ୍ନ ପରି ହୁଏତ ବ. ଜଣ ପଡ଼ୂଟିବ !

କେଉଁଠୁଁ ବିଚ୍ଛିନ୍ନ ହୋଇ
ପୁଣି କେଉଁ ବିଚ୍ଛିନ୍ନତା ବୋଧର ନିଶାରେ
ସେ ପାଇଲା ହାତଗୋଡ଼ ଓ ଶବ୍ଦର ଶିକୁଳି
ତେଣୁ ତ ଭୂମିଷ୍ଠ ହେଲା ଆଖି ମଳି ମଳି ।।

ତା' ଶବ-ସାଧନା ପର୍ବ
ଏହାପରେ ହୋଇଲା ଆରଂଭ,
ଆପଣାର ଶବର ଆସନ ମେଲି
ସେ ବସିଛି, ଚତୁଃଦିଗେ କିଳିକିଳା ରବର କାହାଳୀ;

କାହିଁ ତା'ର ଦେହହୀନ ଦେହ
ଏବଂ ମନହୀନ ମନର ଯନ୍ତ୍ରଣା;
କାହିଁ ସେଇ ମାତୃଗର୍ଭ ଅନ୍ଧକାର
କାହିଁ ସେଇ ଚକ୍ଷୁହୀନ ଅଶ୍ରୁତ ଅଗଣା

ଯେ ଅନ୍ଧାର ଠାରୁ କଳା ଏଠି ଉଗ୍ର
ତା' ମାଆର ପୂର୍ଣ୍ଣକଳା ରୂପ,
ବାମ ହାତେ ଝୁଲେ ତା'ର ରକ୍ତାକ୍ତ ମସ୍ତକ
ବରାଭୟ ମୁଦ୍ରା ହାତେ ସେ ଦେଖୁଛି ଏକ
ପଦ୍ମାସନ ଯେଉଁଠି ତାହାର ପୂର୍ବ ମୂର୍ତ୍ତି ହସେ
ଅପୂର୍ବ ଜ୍ୟୋତିରେ ଓ ନିଜର ଶବ ଦେହେ କୁଶପାତ୍ର ଜଳେ ।

ଏଏ କେଉଁ ମିଳନର ତୀର୍ଥ
ଯେଉଁଠି ଆକାଶ ଏକାଠି ହୁଏ ସମୁଦ୍ର ସହିତ ।।

---

(ବିଶିଷ୍ଟ ତନ୍ତ୍ରସାଧକ ତାରେନ୍ଦ୍ରଦେବ ବ୍ରହ୍ମଚାରୀ ତାଙ୍କ ରଚିତ ।

[‘ତନ୍ତ୍ର ସାଧନା ଓ ତାନ୍ତ୍ରିକ କାହାଣୀ’ ନାମକ ପୁସ୍ତକରେ ନିଜ ଜୀବନର ଦୀର୍ଘ ବର୍ଷମାନଙ୍କର ତନ୍ତ୍ର-ସାଧନା ସମ୍ପର୍କରେ ସତ୍ୟାନୁଭୂତି ବର୍ଣ୍ଣନା କ୍ରମରେ ଏକ ଅଦ୍ଭୁତ ଦୃଶ୍ୟର ଅବତାରଣା କରିଛନ୍ତି । ସୃଷ୍ଟି, ସ୍ଥିତି ଓ ଲୟର ଏକ ମୂର୍ତ୍ତିମାନ ପ୍ରତୀକ କାଳୀ ବା ତାରା ଯାହାଙ୍କ ଏକ ହାତରେ ସେ ଦେଖିଲେ ଶବର କଟା ମୁଣ୍ଡର ରକ୍ତାକ୍ତ ଅବସ୍ଥା, କିନ୍ତୁ ଆହୁରି ଆଶ୍ଚର୍ଯ୍ୟ ଯେ ଅନ୍ୟ ହାତର ବରାଭୟ ମୁଦ୍ରା ମଧ୍ୟରେ ଏକ ପ୍ରସ୍ଫୁଟିତ ପଦ୍ମ ମଞ୍ଚିରେ ସେଇ ଶବର ପ୍ରଶାନ୍ତ ଓ ପ୍ରଫୁଲ୍ଲ ମୂର୍ତ୍ତି । କୌଣସି ଗ୍ଳାନି ନାହିଁ, ନାହିଁ ମୃତ୍ୟୁଭୟ । ତେଣୁ ମା' ହିଁ ହେଉଛନ୍ତି ଉଭୟ ମୃତ୍ୟୁ ଓ ଅମୃତତ୍ୱର ଆଧାର । ଯେଉଁଠି ଉଭୟ ବିଲୀନ] ଏଠି, ଏଇ କବିତାର ମା' ଉଭୟ ଭାବରେ ଗ୍ରହଣ କରାଯାଇଛି । ନିଜର ମା'—ରକ୍ତ-ମାଂସର ଓ ଅନ୍ୟ ସେଇ ଚିନ୍ମୟୀ ମା' । ପ୍ରଶ୍ନ ପଚରାଯାଇଛି ସେଇପରି ଏକ ଶିଶୁ ମୁହୂର୍ତ୍ତରୁ ଯେ କିଏ ଏଯାଏଁ ମସ୍ତିଷ୍କର ଆକୃତି ଗ୍ରହଣ କରିନାହିଁ; ତେଣୁ ତା'ର ପୂର୍ବ ଜନ୍ମର ସ୍ମୃତି ଥିବା ସ୍ୱାଭାବିକ । ଏହା ଏକ Metaphysical aspect ଏବଂ ଏହାର ଚିନ୍ତନଟି ଯଥେଷ୍ଟ । ତନ୍ତ୍ର ସାଧନା ସମ୍ପର୍କରେ ଧାରାବାହିକ ଅନେକ ପୁସ୍ତକ ଅଧ୍ୟୟନ ବେଳେ ହଠାତ୍ ଏଇ ପୁସ୍ତକର ଉପରୋକ୍ତ ସତ୍ୟ ଘଟଣାଟି ମୋତେ ଆକୃଷ୍ଟ କରେ; ତେଣୁ ଏଇ କବିତା । )

